ପ୍ରକାଶକ
ମହେନ୍ଦ୍ର ମିଶ୍ର
ଲାର୍କ ବୁକ୍‌ସ
ଲୁଇସ୍ ରୋଡ଼, ଭୁବନେଶ୍ୱର-୭୫୧୦୧୪
ଷ୍ଟେସନରୋଡ଼, କଟକ-୭୫୩୦୦୨

ପ୍ରଚ୍ଛଦପଟ୍ଟ
ଅସୀତ ମୁଖାର୍ଜୀ

ପ୍ରକାଶ କାଳ
୧୯୭୯

ମୁଦ୍ରଣ :
କଳିଙ୍ଗ ମୁଦ୍ରଣୀ
ନିମଚୌଡ଼ି, କଟକ-୨

ଦଶଟଙ୍କା ମାତ୍ର

# ଭୂମିକା

ଏଥିରେ ସନ୍ନିବିଷ୍ଟ ରଚନାଗୁଡ଼ିକ ଲଘୁ-ନିବନ୍ଧ ଗୋଷ୍ଠୀୟ । ଏଥିରେ ପ୍ରବନ୍ଧର ଗୁରୁ ଗମ୍ଭୀରତା ନାହିଁ କିମ୍ବା ରମ୍ୟ-ରଚନାର ଚପଳ ବିଳାସ ନାହିଁ । ଏ ସବୁ "କଳିଙ୍ଗ"ର "ସାହିତ୍ୟ-ପୃଷ୍ଠା"ରେ ସ୍ୱାକ୍ଷରିତ ସମ୍ପାଦକୀୟ ରୂପେ ପ୍ରକାଶିତ ହୋଇଥିବାରୁ, ଏଥିରେ ସ୍ୱାଭାବିକ ଭାବରେ ଥାଏ ସାମ୍ବାଦିକତାର ପ୍ରଲେପ ।

ଦୈନିକ "କଳିଙ୍ଗ" କାଗଜର ସମ୍ପାଦକ ଥିବାବେଳେ, ମୋର ଦପ୍ତର ଥିଲା ତରୁଣ କବି ଓ ଲେଖକମାନଙ୍କର ପ୍ରାତ୍ୟହିକ ଆଡ୍ଡା । ସେହି ଆଡ୍ଡାରେ ପ୍ରାୟ ଆଲୋଚିତ ହେଉଥିଲା ସାମ୍ପ୍ରତିକ ସାହିତ୍ୟ ଓ ସମାଜର ନାନା ଆଭିମୁଖ୍ୟ । ତରୁଣର ଚିନ୍ତାରେ ଯେଉଁ ସବୁ ବିଭ୍ରାନ୍ତି ସୃଷ୍ଟି ହେଉଥିଲା, ଏଇ ଆଡ୍ଡା ଥିଲା ତାହାର ସୋଚାର ଚିନ୍ତାର ଏକ ମଞ୍ଚ । ମୁଁ ଏହାକୁ ଖୁବ୍ ପ୍ରୋତ୍ସାହିତ କରୁଥିଲି ।

ସେହି ସମୟରେ ମୁଁ ଅନୁଭବ କରିଥିଲି, ଓଡ଼ିଆ ସାମ୍ବାଦିକତାର ମାନ କି ଦୟନୀୟ ! ନେତା ଓ କ୍ଷମତାସୀନ ବ୍ୟକ୍ତିମାନଙ୍କର ଭାଷଣ ଓ

କେତେକ ଅବାନ୍ତର ସମ୍ବାଦ ପ୍ରକାଶ କରିବା ଛଡ଼ା, ସାହିତ୍ୟ, ସୁରୁଚି ଓ ସଂସ୍କୃତି ପ୍ରତି ସମ୍ବାଦପତ୍ରମାନଙ୍କର ଯେପରି କୌଣସି ଦାୟ ଦାୟିତ୍ୱ ନାହିଁ । ଅଥଚ ଇଂରାଜୀ ସମ୍ବାଦପତ୍ର କାହିଁକି, ବଙ୍ଗଳା ପରି କେତେକ ଭାଷାର ଦୈନିକ ସମ୍ବାଦପତ୍ର ଲକ୍ଷ୍ୟ କଲେ ଦେଖାଯିବ, ପାଠକ ସମାଜରେ ସାଂସ୍କୃତିକ ଚେତନାର ଉଦ୍‌ବୋଧନ ପାଇଁ ଏମାନେ ମଧ୍ୟ ଚେଷ୍ଟିତ । ଏଥିରେ ଏପରି କେତେକ ରଚନା ପ୍ରକାଶ ପାଇଥାଏ, ଯାହା ସାଂପ୍ରତିକ ସାହିତ୍ୟକୁ ମଧ୍ୟ ପରିପୁଷ୍ଟ କରିବାରେ ସକ୍ଷମ ହୋଇଥାଏ । ସାମ୍ପ୍ରତିକ ରାଜନୈତିକ ଚିନ୍ତ ପରିବେଷଣ କରିବା ସଙ୍ଗେ ସଙ୍ଗେ ସାମ୍ପ୍ରତିକ ଯୁଗ-ମାନସର ଚିନ୍ତ ମଧ୍ୟ ଏମାନେ ପରିବେଷଣ କରିଥାନ୍ତି । "କଳିଙ୍ଗ" ସମ୍ବାଦପତ୍ରର "ସାହିତ୍ୟ ଓ ସମାଜ" ସ୍ତମ୍ଭ, ସେହି ଚେତନାର ଫଳଶ୍ରୁତି । ଏ ସବୁ ସେତେବେଳେ ତରୁଣ ଲେଖକଗୋଷ୍ଠୀର ଶ୍ରଦ୍ଧାମାଲ୍ୟରେ ଯେପରି ପ୍ରୀତିଧନ୍ୟ ହୋଇଥିଲା, ତାହା ଏହି ଲେଖକ ଜୀବନରେ ପ୍ରକୃତରେ ଅବିସ୍ମରଣୀୟ ।

ଷଷ୍ଠ-ଦଶକ ଓଡ଼ିଆ ସାହିତ୍ୟରେ ଏକ୍‌ସ୍‌ପେରିମେଣ୍ଟେସନ୍‌ର କାଳ । ପ୍ରତିଷ୍ଠିତ (?) ସାହିତ୍ୟ-ପତ୍ରିକାମାନଙ୍କର ଦ୍ୱାର ଏମାନଙ୍କ ପାଇଁ କିନ୍ତୁ ରୁଦ୍ଧ ରହିଥିଲା । ସେ ସବୁ ପତ୍ରିକାମାନଙ୍କରେ ଏ ଶ୍ରେଣୀର କବିତା ରଚନା ସବୁ ଥିଲା ଅପାଙ୍‌କ୍ତେୟ । ସେଥିପାଇଁ ଗୋଟିଏ ଗୋଟିଏ ଗୋଷ୍ଠୀ ଗଠନ

କରି ତାହାର ଆନୁକୂଲ୍ୟରେ ଏମାନେ ପ୍ରକାଶ କରୁଥିଲେ ବହୁ 'ମିନି' ପତ୍ରିକା । ଝଞ୍ଜା ଓ ଅନାମ ବ୍ୟତୀତ ସେମାନଙ୍କ ମଧ୍ୟରୁ ଅନ୍ୟ ସବୁ ମଉଳି ଗଲେଣି । "କଳିଙ୍ଗ"ର ଦ୍ୱାର ସେମାନଙ୍କ ପାଇଁ ଥିଲା ଅବାରିତ । ବସ୍ତୁତଃ ଷଷ୍ଠ-ଦଶକରେ ଓଡ଼ିଆ ସାହିତ୍ୟରେ ଗୋଷ୍ଠୀ-ଗଠନର ଭୂମିକା ଥିଲା ଅନସ୍ୱୀକାର୍ଯ୍ୟ । ଏଇ ତରୁଣ ଗୋଷ୍ଠୀଙ୍କୁ ନିଜର ଅଧ୍ୟୟନ ଓ ଅଭିଜ୍ଞତାରୁ କେତେକ ଦିଗ୍‌ଦର୍ଶନ ଦେବା ଥିଲା ଏହି ଗ୍ରନ୍ଥର ଉଦ୍ଦେଶ୍ୟ ।

ସ୍ୱାଭାବିକ ଭାବରେ ତେଣୁ ଏହି ରଚନାଗୁଡ଼ିକ ସଂକ୍ଷିପ୍ତ କିନ୍ତୁ ସୂଚନା-ଗର୍ଭିତ । ଆଗ୍ରହୀ ପାଠକ, ଆଲୋଚକ ଓ ଅନ୍ୱେଷକମାନେ ଏଥିରେ ବହୁ ସୂଚନା ସଂଗ୍ରହ କରିପାରନ୍ତି ।

"ଲାର୍କ ବୁକ୍‌ସ"ର ସ୍ୱତ୍ୱାଧିକାରୀ ଦୈବାତ୍ ଏହି ରଚନାଗୁଡ଼ିକୁ ସାଇତି ରଖିଥିଲେ । ତାଙ୍କର ଉଦ୍ୟମରେ ପୁସ୍ତକାକାରରେ ଏହାର ପ୍ରକାଶ ସମ୍ଭବ ହୋଇପାରିଲା । ସେଥିପାଇଁ ସେ ଧନ୍ୟବାଦାର୍ହ ହୋଇ ରହିବେ ।

ଶିବାମି
କଟକ-୮ — ସୁରେନ୍ଦ୍ର ମହାନ୍ତି
୩, ଅପ୍ରେଲ ୭୯

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ସାହିତ୍ୟ କାହିଁକି ? | ୧ |
| ଯୌନତା ଓ ସାହିତ୍ୟ | ୩ |
| ସାଂପ୍ରତିକ କବିତା | ୬ |
| ଚନ୍ଦ୍ରସ୍ପର୍ଶ | ୯ |
| ସାହିତ୍ୟ ଓ ବିଦ୍ରୋହ | ୧୦ |
| ଲିଟିଲ୍ ମାଗାଜିନ୍ | ୧୩ |
| ସାହିତ୍ୟରେ ଅଶ୍ଳୀଳତା | ୧୫ |
| ସାଂପ୍ରତିକ କବିତା (୨) | ୧୯ |
| ଅବିଷୟ ଓ ସାହିତ୍ୟ | ୨୩ |
| ଯୁବ ଲେଖକ | ୨୭ |
| ଫର୍ ଆଡ଼ଲ୍ଟ୍ସ୍ ଓନ୍ଲି | ୩୧ |
| ସ୍ବର ଅକ୍ଷର | ୩୫ |
| ମଡ଼ର୍ଣ୍ଣିଜିମ୍ ଓ ଏକ୍ସ୍ପେରିମେଣ୍ଟ | ୩୮ |
| ନେତି···ନେତି | ୪୧ |
| ସାହିତ୍ୟର ଭବିଷ୍ୟତ | ୪୪ |
| ଅମୃତ ମନ୍ଥନ | ୪୭ |
| ପୁସ୍ତକ ପ୍ରସାର ପକ୍ଷ | ୫୦ |
| ଯୁବ-ସାହିତ୍ୟ | ୫୩ |
| ଜୀବନ ଉପରେ ସାହିତ୍ୟର ପ୍ରଭାବ | ୫୭ |
| ରୂପାନ୍ତର | ୬୦ |
| ସେକ୍ସ-ବନ୍ଦୀ ଭାରତୀ | ୬୩ |
| ସାହିତ୍ୟର ଭବିଷ୍ୟତ | ୬୭ |

| ବିଷୟ | ପୃଷ୍ଠା |
|---|---|
| ମାଘ-ସପ୍ତମୀ | ୬୯ |
| ମାଂସପେଶୀ ଓ ମହାକାବ୍ୟ | ୭୨ |
| ପାରମ୍ପରିକ ଓ ସାଂପ୍ରତିକ | ୭୫ |
| ଡିକେନ୍ସ ଶତବାର୍ଷିକୀ | ୭୮ |
| ମିଲ୍ଟନ ଓ ମାର୍କ୍ସୀ | ୮୧ |
| ପ୍ରଥମ ଉପନ୍ୟାସ | ୮୩ |
| ସାଂପ୍ରତିକ | ୮୫ |
| ଗୋଷ୍ଠୀ ଓ ସାହିତ୍ୟ | ୮୭ |
| ଉଲ୍ଲଙ୍ଗ ରସ | ୯୦ |
| ଲେଖକର ରିକ୍ତତା | ୯୩ |
| ଦୁଇ ସଂସ୍କୃତି | ୯୫ |
| ରାଷ୍ଟ୍ର ଓ ଲେଖକ | ୯୯ |
| ଲେଖକ ଓ ପାଠକ | ୧୦୩ |
| ସମାଜ ଓ ସାମାଜିକ | ୧୦୭ |
| ମାଟିମା-ଶୋ | ୧୦୯ |
| ସାହିତ୍ୟ, ସଂସ୍କୃତି ଓ ରାଜନୀତି | ୧୧୨ |
| ଆଜିର ଦୁର୍ବୋଧତା | ୧୧୪ |



# ସାହିତ୍ୟ କାହିଁକି ?

ବାସ୍ତବିକ ! ସାହିତ୍ୟ କାହିଁକି ?···ଏକ ଉତ୍ପୀଡ଼ିକ ଜିଜ୍ଞାସା । ଓଡ଼ିଆ ସାହିତ୍ୟ ଓ ଜାତୀୟ ଜୀବନର ଯେଉଁ ବରପୁତ୍ର ପଣ୍ଡିତ ଗୋଦାବରୀଶଙ୍କ ସ୍ମୃତି-ତର୍ପଣ ଉଦ୍ଦେଶ୍ୟରେ ଆୟୋଜିତ ସାହିତ୍ୟସଭାରେ ସେଦିନ ମୋ ପାଇଁ ଭାଷଣର ବିଷୟବସ୍ତୁ ରୂପେ ଉଦ୍ୟୋକ୍ତାମାନେ ଏହାକୁ ନିର୍ବାଚନ କରିଥିଲେ ; ତାଙ୍କ ନିଜ କାଳରେ କିନ୍ତୁ ଏପରି ବିଷୟବସ୍ତୁ ନିତାନ୍ତ ଉଦ୍‌ଭଟ ରୂପେ ବିବେଚିତ ହୋଇଥାନ୍ତା । ଭିକ୍ଟୋରିଆନ୍ ଓ ଏଡ୍‌ୱାର୍ଡ଼ିୟାନ୍ ଯୁଗର-ସାହିତ୍ୟାଦର୍ଶ ଅନୁସାରେ ସେ ଯୁଗରେ (ବିଂଶ ଶତାବ୍ଦୀର ଆଦ୍ୟପାଦ) ସାହିତ୍ୟ ଥିଲା ସମାଜ ପାଇଁ ସର୍ବତୋଭାବରେ ଉଦ୍ଦିଷ୍ଟ ! ସମାଜ ସଂସ୍କାର ଥିଲା ସେ ଯୁଗ ସାହିତ୍ୟର ଆଦର୍ଶ । ଜାତି ଚେତନା ଥିଲା ସେ ସାହିତ୍ୟର ଅଭିମୁଖ୍ୟ । ସେ ଯୁଗରେ ରାଜନୀତି ଜୀବନର ସକଳ ବିଭାଗକୁ ଅକ୍ଟୋ-ପାସ ପରି ଏପରି ଛନ୍ଦି ବାନ୍ଧି ନ ଥିଲା । ରାଜନୀତିକ ନେତା ମାମଲତକାର-ମାନେ ଯେପରି ବିଳବିଳେଇଲେ ଏ ଯୁଗରେ ବେଦ ହେଉଛନ୍ତି, ସେ ଯୁଗରେ ସେପରି ସାମାଜିକ ପରିସ୍ଥିତି ନ ଥିଲା । ସେ ଯୁଗର ନେତାମାନେ ମଧ୍ୟ ଥିଲେ ସାହିତ୍ୟିକ (ଉଦାହରଣ—ଗାନ୍ଧୀ, ଜବାହାରଲାଲ) ପୁଣି ସାହିତ୍ୟିକ-ମାନଙ୍କୁ ମଧ୍ୟ ଏକ ରାଜନୈତିକ ଅଙ୍ଗୀକାର ବା କମିଟ୍‌ମେଣ୍ଟ ରଖିବାପାଇଁ ପଡ଼ୁଥିଲା । ଏକ ସୁନିର୍ଦ୍ଦିଷ୍ଟ ସାମାଜିକ, ନୈତିକ ଓ ନାନ୍ଦନିକ ବା "ଆଇସଥେଟିକ" ମୂଲ୍ୟବୋଧ ଉପରେ ସେମାନଙ୍କୁ ସାହିତ୍ୟର ଭିତ୍ତିଭୂମି ନିର୍ମାଣ କରିବା ପାଇଁ ପଡ଼ୁଥିଲା ! ସେ ଯୁଗରେ "ସାହିତ୍ୟର କାହିଁକି ?" ଥିଲା···ସମାଜ (ବଡ଼ ବଡ଼ ହରଫରେ !)

ମାତ୍ର ବୈଜ୍ଞାନିକ ପ୍ରଯୁକ୍ତି ବିଦ୍ୟାର ଅଭିବୃଦ୍ଧି ଓ ଶୈଳ୍ପିକ ବିପ୍ଳବ ସାହିତ୍ୟ-ଚେତନା କ୍ଷେତ୍ରରେ ମଧ୍ୟ କ୍ରମେ ଏକ ପରିବର୍ତ୍ତନ ଆଣିଲା । ରାଜନୀତିକୁ ଏହା ଏକ ପକ୍ଷରେ ଯେପରି କ୍ଷମତା-ସର୍ବସ୍ୱ କରି ଦେଲା ସାହିତ୍ୟକୁ ମଧ୍ୟ ସେହିପରି କରି ଦେଇଥିଲା ସମାଜ-ବିମୁଖ ! ସାହିତ୍ୟ

ଆଉ ସମାଜ-ବିପ୍ଳବର ଇସ୍ତାହାର ହୋଇ ରହି ପାରି ନ ଥିଲା ; କିମ୍ବା ସାହିତ୍ୟିକ ବା କବି, ଶେଲିଙ୍କ ଭାଷାରେ "ପୃଥିବୀର ଅନିର୍ବାଚିତ ବ୍ୟବସ୍ଥାପକ" (Unacknowledged Legislator of the World) ଭୂମିକାରେ ଆଉ ରହି ପାରି ନ ଥିଲା । ମାମଲତି ଓ ସଫଳ ସାମ୍ରାଜ୍ୟରେ ସେ ହଜିଗଲା । ସଂସ୍କାରମୁକ୍ତ କବି ଏ ଯୁଗର ହିପି, ବିଟନିକ୍ ଓ ଆଂଗ୍ରି ପ୍ରମୁଖଙ୍କ ପୂର୍ବାବତାର । ଓସ୍କାର ଓ୍ୱାଇଲଡ଼ଙ୍କ ବିଦ୍ରୋହ ମଧ୍ୟରେ ସାହିତ୍ୟର ସେ ନୂତନ ଘୋଷଣା ପ୍ରକାଶ ପାଇଥିଲା···"Art for its own sake" (କଳାର ଉଦ୍ଦେଶ୍ୟ କେବଳ କଳା) । ସୋଭିଏଟ ସାହିତ୍ୟର "ସୋସିଆଲିଷ୍ଟ-ରିଆଲିଜମ୍" ଏହାକୁ ଅବଶ୍ୟ ବୁର୍ଜୋୟା-କ୍ଷୟିଷ୍ଣୁଶୀଳତା ବା ଡିକାଡ଼େନ୍‌ସ ରୂପେ ଭର୍ତ୍ସନା କରିଥିଲା । ମାତ୍ର ଆଜିର ସୋଭିଏଟ ସାହିତ୍ୟ ଓ କଳା ଅନେକ ପରିମାଣରେ "ସୋସିଆଲିଷ୍ଟ-ରିଆଲିଜମ୍" ପରିବର୍ତ୍ତେ କ୍ରମଶଃ ସେହି ନୂଆ ଡିକାଡ଼େନ୍‌ସ ଦ୍ୱାରା ଅଧିକତର ଭାବରେ ପ୍ରଭାବିତ ହେବାପାଇଁ ଲାଗିଲାଣି । ସୋଭିଏତ-ରୁଷିଆର ଆଧୁନିକ ଚିତ୍ରକଳା ଓ କବିତାରେ ସମାଜ ଓ ରାଷ୍ଟ୍ର ବିରୁଦ୍ଧରେ ବ୍ୟକ୍ତି ଚେତନାର ଏକ ମୌନ ପ୍ରତିବାଦ କ୍ରମେ ଘୋଷିତ ହେଲାଣି । ଏଥିରେ ସୋଭିଏଟ ରୁଷିଆର ଶକ୍ତିଧରମାନେ ଯେପରି ଶଙ୍କିତ, ବୃଦ୍ଧ ଆକାଡ଼େମୀସିଆନ-ପ୍ରତିଷ୍ଠା ପ୍ରାପ୍ତ ସାହିତ୍ୟିକ ଗୋଷ୍ଠୀ ସେହିପରି ମଧ୍ୟ ଚିନ୍ତିତ ।

ଆଜିର ସାହିତ୍ୟରେ ବିଶେଷତଃ କବିତାରେ ସମାଜ ଚେତନା ଅବଶ୍ୟ ସୁତୀବ୍ର । ସେ ଦିନ ସମାଜର ବାତାୟନ ପଥରେ ସାହିତ୍ୟିକମାନେ ବ୍ୟକ୍ତିକୁ ଆବିଷ୍କାର କରିବାପାଇଁ ଉଦ୍ୟମ କରିଥିଲେ । କିନ୍ତୁ ଆଜି ଲେଖକ ଓ କବି ବ୍ୟକ୍ତିଚେତନାର ବାତାୟନ ପଥରେ ତାହାର ସମାଜ ଓ ପରିବେଷ୍ଟନୀକୁ ଆବିଷ୍କାର କରିବା ପାଇଁ ଚେଷ୍ଟିତ । ଏ ଆବିଷ୍କାର କିନ୍ତୁ ତା ପକ୍ଷରେ ଆଣିଛି ଏକ ମୋହଭଙ୍ଗ । ଯାହାକୁ ସେ ଜାଣି ଆସିଥିଲା ମୁଖଶ୍ରୀ ବୋଲି ତାହାକୁ ସେ ଏବେ ଜାଣିଲା ଏକ ମୁଖା । ଯାହାକୁ ସେ ବୁଝିଥିଲା ଆଦର୍ଶ ବୋଲି ସେ ସବୁ ହେଲା ଶଠତା । ଆଜିର ସାହିତ୍ୟ ତେଣୁ ମୁଖ୍ୟତଃ ପ୍ରତିବାଦର ସାହିତ୍ୟ । ବିଦ୍ରୋହର ସାହିତ୍ୟ । ମୋହଭଙ୍ଗର ଚେତାବନୀ !



(କଳିଙ୍ଗ ୩-୮-୬୯)

# ଯୌନତା ଓ ସାହିତ୍ୟ

ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି ହେଉଛି ହଠାତ୍ ରାଗିଉଠି ଗାଳି ଦେଲେ ସେଥିରେ କାମଶାସ୍ତ୍ର-ବର୍ଣ୍ଣିତ କେତେକ ନିଷିଦ୍ଧ ଅଶ୍ଳୀଳ ବିଶେଷ୍ୟ ଓ କ୍ରିୟାପଦ ସେ ବ୍ୟବହାର କରିଥାଏ । ଇଂରାଜୀରେ ଅଧୁନାପ୍ରସିଦ୍ଧ "ଫୁର-ଅକ୍ଷର-ବିଶିଷ୍ଟ" ଶବ୍ଦ ବା "ଫୋର୍-ଲେଟର ଓ୍ୱାର୍ଡ୍" ଠାରୁ ଆରମ୍ଭ କରି ଆମ ଭାଷାରେ ଦୋ-ଅକ୍ଷରୀ ତିନି-ଅକ୍ଷରୀ ବିଶିଷ୍ଟ ଗାଳି ପର୍ଯ୍ୟନ୍ତ ବିଭିନ୍ନ ରୂପ, ବର୍ଣ୍ଣ ଓ ସ୍ୱାଦର ଗାଳି ମଧ୍ୟରେ ଏ ସତ୍ୟଟିକୁ ପରୀକ୍ଷା କରାଯାଇ ପାରିବ । ଶିକ୍ଷିତ, ମାର୍ଜିତ ଲୋକେ ସୁଦ୍ଧା ଏଥିରୁ ମୁକ୍ତ ନୁହନ୍ତି । ଏହାର କାରଣ ମଧ୍ୟ ଅସ୍ପଷ୍ଟ ନୁହେଁ । ତଥାକଥିତ ଅଶ୍ଳୀଳତା ହେଲା ମନୁଷ୍ୟର ସହଜାତ ପ୍ରବୃତ୍ତି । ସଭ୍ୟତାର ପରଦା ପକାଇ କେବଳ ମନୁଷ୍ୟ ଶୁଭ୍ର ଓ ଶ୍ଳୀଳ ହେବାପାଇଁ ଚେଷ୍ଟା କରିଥାଏ । କିନ୍ତୁ ହଠାତ୍ କେବେ କ୍ରୁଦ୍ଧ ବିସ୍ଫୋରଣ ମଧ୍ୟରେ ଯେତେବେଳେ ସେ ଯବନିକାଟି ଉଠିଯାଏ, ସେତେବେଳେ ସ୍ୱାଭାବିକ ଭାବରେ ସେହି ଅଶ୍ଳୀଳତାହିଁ ଫୁଟି ଉଠିଥାଏ । ତାହା ଅବଶ୍ୟ ଦୃଷ୍ଟିକଟୁ, ଶ୍ରୁତିକଟୁ, ରୁଚିକଟୁ ; ସନ୍ଦେହ ନାହିଁ ।

ଆଜି ୟୁରୋପର ସାହିତ୍ୟ କେବଳ ଉଲଙ୍ଗ ନୁହେଁ । ରଙ୍ଗମଞ୍ଚ ଉପରେ ଅଭିନେତା, ଅଭିନେତ୍ରୀମାନେ ବର୍ତ୍ତମାନ ସମ୍ପୂର୍ଣ୍ଣ ଉଲଙ୍ଗ ହୋଇ ନାଟକ ପରିବେଷଣ କରିବା ଆରମ୍ଭ କରି ଦେଲେଣି ! (ନାଟକର ନାମ "The Hair" ବା "କେଶ") । ଏହାକୁ ଶ୍ଳୀଳ ନା ଅଶ୍ଳୀଳ କ'ଣ କୁହାଯିବ ? ସେ ଉତ୍ତର ଦେବ ବା କିଏ ? ଇଂଲଣ୍ଡରେ ବହୁ ସମ୍ମାନିତ, ରଙ୍ଗମଞ୍ଚର 'ସେନସର' (Censor) କେବଳ ସେ ଉତ୍ତର ଦିଅନ୍ତେ । ମାତ୍ର ଏ ପଦବୀଟିକୁ ଏହି ନାଟକ ଯୋଗୁଁ ଅବଶେଷରେ ଇଂଲଣ୍ଡରୁ ଉଠାଇ ଦେବାପାଇଁ ପଡ଼ିଲା । କାରଣ ସେନସର୍ ମହୋଦୟ ଭିକ୍ଟୋରିଆନ ଯୁଗର ରୁଚି-ବୈକଲ୍ୟରେ ଏହି ନାଟକଟିକୁ ମୁକ୍ତ ରଙ୍ଗମଞ୍ଚରେ ଅଭିନୟ

କରିବା ପାଇଁ ଅନୁମତି ଦେଇ ନ ଥିଲେ । ଫ୍ରାନ୍‌ସରେ ପାଶ୍ଚ ପ୍ରମୁଖଙ୍କର ଉପନ୍ୟାସ ଆଜି ସମଲିଙ୍ଗୀ ଯୌନପ୍ରବୃତ୍ତିରେ ଗୁଲ୍‌ଜାର । ଚେକୋସ୍ଲୋ-ଭାକିଆର ବହୁ ସମ୍ମାନିତ ଓ ଏକାଧିକବାର ଅସ୍କାର ପୁରସ୍କାରପ୍ରାପ୍ତ ଫିଲ୍ମ-ମାନଙ୍କରେ ଉଲଙ୍ଗ ଯୌନମିଳନର ଦୃଶ୍ୟ ଦର୍ଶକମାନଙ୍କୁ ବିବ୍ରତ କରେ ନାହିଁ କିମ୍ବା ଶିହରିତ ସୁଦ୍ଧା କରେ ନାହିଁ । ଆଜିର ଉଲଙ୍ଗତା ଶ୍ଳୀଳତା ଓ ଅଶ୍ଳୀଳତାର ଊର୍ଦ୍ଧ୍ୱରେ । ବକଧର୍ମୀ ସମାଜର ସବୁ ପ୍ରବଞ୍ଚନା ବିରୁଦ୍ଧରେ ଆଜିର ଅଶ୍ଳୀଳତା ଏକ ବିଦ୍ରୋହ । ଜଣେ ସାଂପ୍ରତିକ ଓଡ଼ିଆ ତରୁଣ କବି ଏବେ ଏକ ସ୍ମରଣୀୟ କବିତାରେ ଉଲଙ୍ଗତାର ଏ ଇସ୍ତାହାର ଘୋଷଣା କରିଥିଲେ ।

"ସମସ୍ତେ ଯେବେ ତ ଆଜି ଲୁଗାପିନ୍ଧି ଲଙ୍ଗଳା ହେଲେଣି,
ଆମେ ତେବେ ଆସ ବନ୍ଧୁ ଲୁଗାଖୋଲି ସେମାନଙ୍କ ନଗ୍ନତା ଢାଙ୍କିବା ;

× × ×

ସେମାନେ ସମସ୍ତେ ଯିଏ
ଝିଲ୍‌ମିଲ୍ ଲୁଗା ପିନ୍ଧି ଲଙ୍ଗଳା ନିହାତି
ଆଜି ପୁଣି ସେମାନେ ତ ଆମକୁ କୁହନ୍ତି
ଆମେ ତ କୁଆଡ଼େ ସବୁ ନିତାନ୍ତ ଅସାମାଜିକ
ନିହାତି ଅଶ୍ଳୀଳ, ନିହାତି ଜଘନ୍ୟ
ପୁଣି ପ୍ରବଞ୍ଚକ ଦଳ ।"

(ଆସ ଆମେ ନଗ୍ନ ହେବା—ଶ୍ରୀ ବ୍ରଜରଥ
ଡ ଓ ଲୁ—ପୂଜାସଂଖ୍ୟା ୧୯୬୮)

ସବୁ ସାଂପ୍ରତିକ କବିତା ଓ ସାହିତ୍ୟ ପରି ଭାରତୀୟ ସାହିତ୍ୟରେ ମଧ୍ୟ ଏ ଉଲଙ୍ଗତାର ସଂକ୍ରମଣ ହେଲାଣି । ଏଥିରେ ଆଶଙ୍କିତ ହେବାପାଇଁ କିଛି ନାହିଁ । ଆତଙ୍କିତ ହେବା ମଧ୍ୟ ନିରର୍ଥକ । "ଆଜି ସାହିତ୍ୟ କାହିଁକି" ତାର ଉତ୍ତର ନିଜକୁ ଓ ନିଜର ଉଲଙ୍ଗ ଆତ୍ମାକୁ ଆବିଷ୍କାର କରିବା । ଏହି ଆବିଷ୍କାର ମଧ୍ୟରେ ରହିଛି, ମନୁଷ୍ୟ, ସମାଜ ଓ ପୃଥିବୀକୁ ଆଉ ଥରେ ନୂଆକରି ଚିହ୍ନି ଗଢ଼ିବାର ଦୁଃସାହସ । ଅନେକ ସାଂପ୍ରତିକ ଓଡ଼ିଆ କବିତାରେ ଏହି ଆଭିମୁଖ୍ୟ ଅଧିକ କ୍ଷୀଣ ଥିଲେ ହେଁ ସୁସ୍ପଷ୍ଟ ।

ଏମାନଙ୍କ ସାହିତ୍ୟର ମୂଲ୍ୟାୟନ କଲାବେଳେ ଏମାନଙ୍କ ମଧ୍ୟରେ କୌଣସି ବନପ୍ରାନ୍ତର ପ୍ରଶାନ୍ତ ଶ୍ରୀ ହୁଏତ ଆମ ଦୃଷ୍ଟିରେ ପଡ଼ିବ ନାହିଁ । ଏମାନେ ସବୁ ହୁଏତ ମରୁ ପ୍ରାନ୍ତରର କାକଟସ୍ ଫୁଲ ପରି କଣ୍ଟକିତ । ମାତ୍ର ବର୍ଣ୍ଣାଢ଼୍ୟ । ଏମାନେ ହୁଏତ କୌଣସି ମହତ ସାହିତ୍ୟ ସୃଷ୍ଟି କରି ପାରିବେ ନାହିଁ । କିନ୍ତୁ ଆମ ଆତ୍ମାର ବୈକଲ୍ୟ ଓ ଜୀବନର ଅସଙ୍ଗତି ପ୍ରତି ଏମାନଙ୍କ ସାହିତ୍ୟ ଆମକୁ ସଚେତନ କରି ଦେଇ ପାରିବ । ସାଂପ୍ରତିକ "ବୀଟ ଜେନେରେସନ"ର କବିତା ସମ୍ପର୍କରେ ଜଣେ ସମାଲୋଚକ ଯାହା କହିଛନ୍ତି ଏମାନଙ୍କ କ୍ଷେତ୍ରରେ ତାହା ମଧ୍ୟ ପ୍ରଯୁଜ୍ୟ—
"Though the Beat-Generation and the Angry young-men have yet to produce a major literature, they most assuredly have created a significant one bringing to our awareness certain essential truth about existence in this decade of the Twentieth Century."

(କଳିଙ୍ଗ ୩-୮-୬୯)



# ସାଂପ୍ରତିକ କବିତା

ସକାଳ ଡାକ ଖୋଲିବା ମାନେ ବିଚିତ୍ର-ବର୍ଣ୍ଣା ଦଳ ଦଳ ପ୍ରଜାପତି ପରି, ଫେଣାମେଲି ଯାହା ସମ୍ପାଦକୀୟ ବିବର୍ଣ୍ଣତାକୁ ଆକ୍ରମଣ କରନ୍ତି··· ତାହା ହେଲା ସାମ୍ପ୍ରତିକ ତରୁଣ ଗୋଷ୍ଠୀଙ୍କର ଗଣି ଗଣି କବିତା, ସାହିତ୍ୟ ସଂଖ୍ୟାରେ ପ୍ରକାଶ ପାଇଁ। କ୍ଷୁଦ୍ର ଗଳ୍ପ କ୍ୱଚିତ। ପିତା ଔଷଧ ଗିଳିବା ପରି, ସେ ସବୁକୁ କ୍ଷୁଦ୍ରଗଳ୍ପ ନାମରେ ଆତ୍ମସାତ୍ କରିବା ପାଇଁ ପଡ଼େ। ସେ ଗଳ୍ପ ସବୁ ପୁଣି ଅପରିଣତ ମନର ପାଣିଚିଆ ରୋମାନ୍ସ। ପ୍ରେମ କରିବା ଗୋଟାଏ "ଫୁଲ୍-ଟାଇମ୍" କାର୍ଯ୍ୟ। ସେଥିପାଇଁ ଏ "ଟଚ ଆଣ୍ଡ ଗୋ" ଯୁଗରେ କାହା ହାତରେ ବା ଏତେ ସମୟ ଅଛି? ପ୍ରେମ ନାମରେ ପ୍ରବୃତ୍ତି ଓ ପ୍ରତାରଣାର ଯେଉଁ କେତେକ ଗଳ୍ପ ମିଳେ, ସେ ସବୁ ପୁଣି ନିତାନ୍ତ ପାଣିଚିଆ। ସେଥିରେ ଅନୁଭୂତିର ସ୍ୱାକ୍ଷର ନାହିଁ। ପ୍ରବନ୍ଧ ମଧ୍ୟ ଅତି କ୍ୱଚିତ୍ ମିଳିଥାଏ। ସେ ସବୁ ଶ୍ରେଣୀପାଠ୍ୟ ସୁଲଭ। ଅଧ୍ୟୟନ ଅପେକ୍ଷା ଅଧ୍ୟାପନାର ସ୍ୱର ସେଥିରେ ସ୍ପଷ୍ଟତର। ଏ ପରିସ୍ଥିତିରେ ଯାହା କିନ୍ତୁ ଆମାପ ପ୍ରାଚୁର୍ଯ୍ୟରେ ଗଳ୍ପ ଓ ପ୍ରବନ୍ଧର ସବୁ ଦୈନ୍ୟ ବୁଡ଼ାଇ ଦିଏ ତାହା ହେଲା କବିତା। ସାମ୍ପ୍ରତିକ ଓଡ଼ିଆ ସାହିତ୍ୟରେ କବିତା ଯେପରି ସମୃଦ୍ଧ ବହୁ ଲେଖକ ଲେଖିକାଙ୍କ ରଚନାରେ ଏହା ଯେପରି ଐଶ୍ୱର୍ଯ୍ୟମୟ; ବହୁ କଣ୍ଠର କାକଳୀରେ ଏହା ଯେପରି ମୁଖରିତ; ଓଡ଼ିଆ ସାହିତ୍ୟର ଅନ୍ୟ କୌଣସିଟି ବିଭାଗ ସେପରି ନୁହେଁ। ଏସବୁ କବିତାର ରୂପ ମଧ୍ୟ ଏକ··ସେଠାରେ ପ୍ରକୃତ ଗଣତାନ୍ତ୍ରିକ ସାମ୍ୟବାଦ! କବିତା ରାଜ୍ୟରେ ଆଜି କେହି ଆଉ ମହନ୍ତ, ମଠାଧୀଶ, ସାମନ୍ତ ଅଥବା ସମ୍ରାଟ ହୋଇ ବସି ନାହାନ୍ତି। ସମସ୍ତେ ସମାନ···। ଗଣତାନ୍ତ୍ରିକ-ସାମ୍ୟବାଦ ପରି, ଏ କବିତାଗୁଡ଼ିକର ମେଜାଜ୍ ପୁଣି କ୍ଲାନ୍ତ ଓ ବିଷଣ୍ଣ।···କବି ନାରାୟଣ ପ୍ରସାଦ ସିଂହଙ୍କ ଭାଷାରେ—

"ଏ ଶାନ୍ତ ପାଣିର

କଅଁଳିଆ କଥା ସବୁ

ଉଠି ପାରୁ ନାହିଁ ଆଉ
ରାସ୍ତାର ଉଠାଣି ।
ଏ ପାଣି ଖାଲି ଅସ୍ତ ଦେଖୁଛି
କିନ୍ତୁ ଉଦୟ ଦେଖୁନି ।"
(ଅନାମ-ଜୁଲାଇ, ୧୯୭୯)

ସାଂପ୍ରତିକ କବିତାର ଦ୍ୱିତୀୟ ଚରିତ୍ର ହେଲା ଗୋଷ୍ଠୀ ଗଠନ । ରାଜନୀତି ଓ ମାମଲତିରେ ଗୋଷ୍ଠୀଗଠନ ଯେତିକି ନିନ୍ଦନୀୟ, ସାହିତ୍ୟରେ କିନ୍ତୁ ଏହା ସେତିକି ଶ୍ଳାଘ୍ୟ, ସେତିକି ଅଭିନନ୍ଦନୀୟ । ସାମ୍ରାଜ୍ୟ ଜର୍ଜରିତ ସମ୍ପାଦକ ଓ ଉନ୍ନାସିକ ସମାଲୋଚକମାନଙ୍କର ଆକ୍ରମଣରୁ ଆତ୍ମରକ୍ଷା, କୁଳରକ୍ଷା ପୁଣି ସ୍ୱାର୍ଥରକ୍ଷା ପାଇଁ ଏ ଗୋଷ୍ଠୀ ସବୁ ଉଦ୍ଦିଷ୍ଟ । ପ୍ରତ୍ୟେକ ଗୋଷ୍ଠୀର ପୁଣି ଖଣ୍ଡେ ଖଣ୍ଡେ ଶ୍ରେଷ୍ଠ 'ଇଲାକା' ରହିଛି, କବିତାର ଫସଲ ପାଇଁ । ସେ 'ଇଲାକା' ସବୁ ମଧ୍ୟ ସାମ୍ୟ-ନୀତିରେ ବଣ୍ଟିତ···କେହି ସ୍ଫୀତୋଦର ପୃଥୁଳକାୟ ନୁହନ୍ତି । ସବୁ "ଲିଟଲ ମାଗାଜିନ ।" ଓଡ଼ିଆ ସାହିତ୍ୟ ପତ୍ରିକାର ଇତିହାସରେ ଏସବୁ "ଲିଟଲ୍ ମାଗାଜିନ"ର ନବଯୁଗ, ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ଇତିହାସରେ କିନ୍ତୁ ଏହାର ସ୍ୱାକ୍ଷର ରହିଯିବ—ସେଥିରେ ମୋର ସନ୍ଦେହ ନାହିଁ । ମୋର କେବଳ ଏକ ମାତ୍ର ପ୍ରାର୍ଥନା, ସେ ସ୍ୱାକ୍ଷର ସବୁ ସ୍ପଷ୍ଟତର ହେଉ । (ଭଦ୍ରକର ଏକ ଗୋଷ୍ଠୀର ନାମ ମଧ୍ୟ "ସ୍ୱାକ୍ଷର" ।)

ଏସବୁ ଗୋଷ୍ଠୀ-ଗଠନର ମଧ୍ୟ ଆଉ ଏକ ଉଦ୍ଦେଶ୍ୟ ରହିଛି । ଆଜିର କବି ଏପରି ଏକାନ୍ତ ଭାବରେ ନିଃସଙ୍ଗ, ତେଣୁ ଆତ୍ମ-କୈନ୍ଦ୍ରିକ ଯେ, ସମାଜ ଓ ପରିବେଶ ସହିତ ତାହାର କୌଣସି ଯୋଗସୂତ୍ର ନାହିଁ । ପୃଥିବୀ ପୃଷ୍ଠରେ ହଷ୍ଟନର ଚନ୍ଦ୍ରଘାଟୀ ଆଉ ଚନ୍ଦ୍ରଲୋକର ଚନ୍ଦ୍ରଯାନ ସହିତ "କମ୍ୟୁନିକେସନ" ରକ୍ଷା କରାଯାଇ ପାରିଲା । ମାତ୍ର ସାମ୍ପ୍ରତିକ କବି ଗୋଷ୍ଠୀର ନିଭୃତଗୃହ "ଆପୋଲୋ" ସହିତ ତାହାର ଉତ୍ପତ୍ତି-ବିନ୍ଦୁ, ସମାଜ, ସହିତ ସବୁ "କମ୍ୟୁନିକେସନ" କିନ୍ତୁ ଆଜି ବିଚ୍ଛିନ୍ନ ହୋଇଅଛି । ଆଜିର କବିତାର ପାଠକ ତେଣୁ ନିଜେ ଆଜି କବି ।

'ଅନାମ'ର ତାତ୍ତ୍ୱିକ ହରିହର ମିଶ୍ରଙ୍କ ମତରେ···"ତାର ଏକମାତ୍ର

କାରଣ ଆଜିକାର କବି ଆଜିକାର କବିତାର ସବୁଠାରୁ ବଡ଼ ସହୃଦୟ ପାଠକ ।"

ପ୍ରୌଢ଼ମାନଙ୍କର ମାମଲତି ଗୋଷ୍ଠୀ ସବୁ କିନ୍ତୁ ଯେତିକି ଦୀର୍ଘଜୀବୀ ଓ ସକ୍ରିୟ ; ତରୁଣମାନଙ୍କର ଏ କାବ୍ୟ-ଗୋଷ୍ଠୀ ସବୁ ସେତିକି ସ୍ୱଳ୍ପଜୀବୀ ଓ ସଂକ୍ଷିପ୍ତ । ସମ୍ବଲପୁରର 'ଅକବିତା' ଗୋଷ୍ଠୀ ଏବେ ନୀରବ ; କଟକର "ଝଞ୍ଜା ଲୁ" ଗୋଷ୍ଠୀ ଫେର ଆସିଛନ୍ତି ପ୍ରୌଢ଼ମାନଙ୍କର ସେଇ ସନ୍ତ୍ରାନ୍ତଜର୍ଜରିତ ମାମଲତି ଅଥବା ମାମଲତି-ଜର୍ଜରିତ ସାମ୍ରାଜ୍ୟ ଭିତରକୁ । 'ନକ୍ଷତ୍ର' ଗୋଷ୍ଠୀ (ବାଲେଶ୍ୱର) ମେଘମାଳା ମଧ୍ୟରେ ବିଲୀନ । କେବଳ ଅନାମ-ଗୋଷ୍ଠୀର କାବ୍ୟାଘାତରେ ଆମର ସାହିତ୍ୟିକ ସାମ୍ରାଜ୍ୟ ଆଜି ସନ୍ତ୍ରସ୍ତ । ଏହି "ଗୋଷ୍ଠୀ"ର ଦୁଃସାହସିକତାରେ ରୋମାଞ୍ଚ ଅଛି । ଏହାର ବୌଦ୍ଧିକ କ୍ଲାନ୍ତିରେ ସୁଦ୍ଧା ଉତ୍ତେଜନା ଅଛି । ଏହାର ପ୍ରକାଶ ଭଙ୍ଗୀରେ ଏପରି ଏକ 'ଭାୟୋଲେନ୍‌ସ' ଅଛି, ଯାହା ସ୍ତିମିତ ସ୍ନାୟୁକେନ୍ଦ୍ରଗୁଡ଼ିକୁ ମୁହୂର୍ତ୍ତକ ପାଇଁ ବେଶ୍ ଉଚ୍ଚକିତ କରିଥାଏ ।···ସମ୍ବଲପୁରର ଅକବିତା ଗୋଷ୍ଠୀର କବି-ମାନଙ୍କ କଣ୍ଠରେ ମଧ୍ୟ ମୁଁ ଦିନେ ଏ ସୁର ଶୁଣିଥିଲି···। ଏମାନଙ୍କ କାକଳୀ ଆଜି କିନ୍ତୁ ନୀରବ ।···

(କଳିଙ୍ଗ, ୨୭-୭-୬୯)



# ଚନ୍ଦ୍ର ସ୍ପର୍ଶ

କଟକ ଜିଲ୍ଲାର ତଳମାଳ ଅଞ୍ଚଳରେ ଏକ ପଲ୍ଲୀ ଗ୍ରାମ···ରାତ୍ର ସାଢ଼େ ଦଶଟା···ଅଦୂରରେ ଏକ ତାଳବଣୀ ଭିତରେ ଭେଲା ଭେଲା କଳାମେଘ ଉହାଡ଼ରେ ଶୁକ୍ଳାଷ୍ଟମୀର ଚନ୍ଦ୍ର ଢଳ ପଡ଼ୁଥିଲା । ରେଡ଼ିଓ ସମ୍ବାଦ ଘୋଷଣା କରି ଚାଲିଥିଲା···ଚନ୍ଦ୍ରଯାତ୍ରୀମାନଙ୍କର ପୃଥିବୀ ପ୍ରତ୍ୟାବର୍ତ୍ତନ ସମ୍ବାଦ ; ଏ ଯୁଗର ମୋହଭଙ୍ଗର ଦୃଷ୍ଟାନ୍ତ । ଆର୍ମିଷ୍ଟ୍ରଙ୍ଗ ଓ ଆଲଡ୍ରିନଙ୍କର ପାଦଚିହ୍ନ ଚନ୍ଦ୍ରର କୁମାରୀ ଗୁଣ୍ଠିତକୁ ବୁଟ୍ ଯୋତାରେ ଦଳିଯିବା ପରେ ; ଏ ଚନ୍ଦ୍ର କଣ ମର୍ତ୍ତ୍ୟ-ମାନବର ଆଖିରେ ଆଉ ସେ ଚନ୍ଦ୍ର ହୋଇ ରହିବ ? ତାଳବଣୀ ଉହାଡ଼ରେ ବଳୀୟମାନ ଚନ୍ଦ୍ର ଆଡ଼େ ଚାହିଁ ସେଇ ପ୍ରଶ୍ନ ଚିନ୍ତା କଲାବେଳେ, ମୋର ମନେ ହେଉଥିଲା, ଚନ୍ଦ୍ରର ତ କିଛି କୌଣସି ପରିବର୍ତ୍ତନ ଘଟିନାହିଁ ! ସେକସ୍‌ପୀୟରଙ୍କ ଭାଷାରେ ଚନ୍ଦ୍ର ତଥାପି ରହିଛି ସେଇ Sovereign mistress of melancholy ! କେତେକ ପରିବର୍ଦ୍ଧନ ହୋଇଛି କେବଳ ମନୁଷ୍ୟର ବିଜ୍ଞାନ ଓ ତାହାର ପ୍ରଯୁକ୍ତି ବିଦ୍ୟାରେ । ଏହା ସେହି ପ୍ରଯୁକ୍ତି ବିଦ୍ୟାର କେବଳ ଆଉ ଏକ ବିଜୟ । ଏହାକୁ ମନୁଷ୍ୟ ସମାଜର ବିଜୟ ବୋଲି ଯେଉଁମାନେ ଘୋଷଣା କରନ୍ତି ସେମାନଙ୍କ ଦଳରେ ମୁଁ ନୁହିଁ !

ଚନ୍ଦ୍ରଯାତ୍ରା କେତେକ ନୂତନ ଶବ୍ଦ ସୃଷ୍ଟି କରିଅଛି । ସେହିପରି ଏକ ଶବ୍ଦ ହେଲା—'Chimp Configuration—ଏହାର ଅର୍ଥ କୌଣସି ଚାମ୍ବର୍‌ସ ଅଭିଧାନରେ ଖୋଜିଲେ ମିଳିବ ନାହିଁ । ସବୁ ବ୍ୟବସ୍ଥା ଯେତେବେଳେ ଏପରି ଠିକ୍‌ଠାକ ହୋଇଥାଏ ଯେ ଗୋଟାଏ ମାଙ୍କଡ଼ (Chimp) ସୁଦ୍ଧା ତାହାକୁ ଅକ୍ଳେଶରେ ପରିଚାଳନା କରିପାରିବ, ସେତେବେଳେ ଆସେ "ଚିମ୍ପ୍ କନଫିଗରେସନ୍"ର ଅବସ୍ଥା ।

ଆଜିର ପ୍ରଯୁକ୍ତି ବିଦ୍ୟାର ପରିଣତି ତ ସେଇଆ ! ଏହି "ଚିମ୍ପ କନଫିଗରେସନ" ବିରୁଦ୍ଧରେ କିନ୍ତୁ ଆଜିର କଳା ଓ ସାହିତ୍ୟର ପ୍ରତିବାଦ । ସାହିତ୍ୟ ସୃଷ୍ଟି କରିବାକୁ ଚାହେଁ ମଣିଷ-ତାଲିମପ୍ରାପ୍ତ ମାଙ୍କଡ଼ ନୁହେଁ !

(କଳିଙ୍ଗ, ୨୭-୭-୬୯)



# ସାହିତ୍ୟ ଓ ବିଦ୍ରୋହ

ମନୁଷ୍ୟର ଆଦିମ ସାହିତ୍ୟ ପ୍ରକାଶ ପାଇଥିଲା କବିତାରେ ଓ ତାହାର ଜନ୍ମ ଯେ "ପ୍ରୋଟେଷ୍ଟ" ମଧ୍ୟରୁ···ଗତ ସପ୍ତାହରେ ଓଡ଼ିଶାର ସାହିତ୍ୟିକ ମୌସୁମ୍ ତାହାର ଏକ ପ୍ରମାଣ ! ଗୁଳି ଚେଟରେ ପ୍ରଧାନ୍ନର ମୃତ୍ୟୁ, ଓଡ଼ିଆ ଜାତିର ଆବେଗକୁ ଯେପରି ସ୍ପର୍ଶ କରି, ତାର ଆଗ୍ନେୟ ସଙ୍କେତ ବହନ କରି ଗତ ସପ୍ତାହରେ ଯେତେ ଯେତେ ସ୍ୱତଃସ୍ଫୂର୍ତ୍ତି କବିତା ଅନୁପ୍ରେରିତ କରିଛି, ସେ ସବୁକୁ ଏକତ୍ର ସଂକଳିତ କଲେ, ତାହା ଏକ କାବ୍ୟ ଗ୍ରନ୍ଥରେ ପରିଣତ ହେବ । ସେଥି ମଧ୍ୟରୁ କେତେକ କବିତା ଏହି ସଂଖ୍ୟାରେ ପ୍ରକାଶିତ ହୋଇଅଛି । ପ୍ରକାଶିତ କବିତା ତୁଳନାରେ ଅପ୍ରକାଶିତ କବିତାଗୁଡ଼ିକର ସଂଖ୍ୟା କିନ୍ତୁ ଆହୁରି ବେଶୀ । ଏସବୁ କବିତା ଲେଖିବାବେଳେ ଆଧୁନିକ ଉତ୍ତର-ପଞ୍ଚାଶର କବିମାନେ ଭୁଲି ଯାଇଛନ୍ତି, କବିତାରେ ବିଭିନ୍ନ 'ବାଦ' ବା 'ଇଜମ୍'ର ପ୍ରୟୋଗ ପରୀକ୍ଷା, ରୂପକଳ୍ପରେ ଦୁର୍ବୋଧତା ପରିହାର କରି ସେମାନେ ଆହରଣ କରିଛନ୍ତି, ସର୍ବଜନବୋଧ୍ୟ ଏକ ପରିଚ୍ଛନ୍ନତା, ଉତ୍ତର-ଷଷ୍ଠୀର ଅତ୍ୟାଧୁନିକମାନେ ସେହିପରି ଭୁଲି ଯାଇଛନ୍ତି ସେମାନଙ୍କର ନିଃସଙ୍ଗତା, ବେଦନାବୋଧ ଓ ଶୂନ୍ୟତା । ପୁଣି ସାଂପ୍ରତିକ କବିମାନେ ମଧ୍ୟ ଫିଙ୍ଗି ଦେଇଛନ୍ତି ସେମାନଙ୍କର ଆତ୍ମକୈନ୍ଦ୍ରିକ ବିଦ୍ରୋହ ଓ ସେଥିରେ ଠାଏ ଠାଏ ଯୌନତାର ଛିଟା । ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳରେ ଓଡ଼ିଆ କବିତାରେ ସମାଲୋଚନାର ସବୁ ପର୍ଯ୍ୟାୟ ଓ ବିଭାଗ ନିଶ୍ଚିହ୍ନ ହୋଇ, ଉଲଙ୍ଗ କ୍ଷମତାର ସ୍ୱୈରାଚାର ବିରୁଦ୍ଧରେ ଜଳି ଉଠିଛି ଏକ ଅତୃପ୍ତ ଅନଳଶିଖା ପରି !

ସମାଜତାତ୍ତ୍ୱିକ ଦୃଷ୍ଟିରୁ ଏ ବିଷୟଟି ଯେପରି ମୌଳିକ, ସେହିପରି ମଧ୍ୟ ସୂଚନାଗର୍ଭିତ । କବିତା ଯେତେବେଳେ ଅନୁପ୍ରେରିତ ହୁଏ ଏକ ବ୍ୟାପକ ସାମାଜିକ ପରିସ୍ଥିତିରେ, ମନ ଓ ପ୍ରାଣରେ ଶିହରି ଯୋଗାଇ ହୁଏ ଏକ ଗଭୀର ଅନୁଭୂତି ମଧ୍ୟରେ, ସେତେବେଳେ କବିତାର

ରସ ସୃଷ୍ଟି ପାଇଁ କୌଣସି 'ଇଜମ୍', ତନ୍ତ୍ର, ଶୈଳୀ ବା ଆଙ୍ଗିକର ପ୍ରୟୋଜନ ନ ଥାଏ । ସେତେବେଳେ କବିତାର ଏକମାତ୍ର ପରିଚୟ ତାହା କବିତା । ପ୍ରଜାପ୍ରତିର ମୃତ୍ୟୁ ବା ହତ୍ୟା, ସେହିପରି ଏକ ପରିସ୍ଥିତି ସୃଷ୍ଟି କରିଅଛି । ଏ ପରିସ୍ଥିତିରେ ସାହିତ୍ୟ ତାହାର ଆଦିମ ପ୍ରବୃତ୍ତିରେ ଅନୁପ୍ରେରିତ ହୋଇ ଉଠିଛି ବହୁ କବିପ୍ରାଣର ବେଦନା ଓ ବିଦ୍ରୋହରେ ।

ସ୍ୱାଧୀନତାର ପୂର୍ବବର୍ତ୍ତୀ କାଳରେ ଭାରତରେ ଥିଲା, ସଂଗ୍ରାମ-ବିକ୍ଷତ ଏହିପରି ଏକ 'ହିରୋଇକ' ପରିସ୍ଥିତି । ସେଥିପାଇଁ ସ୍ୱାଧୀନତା-ପୂର୍ବବର୍ତ୍ତୀ କାଳରେ ସାହିତ୍ୟରେ ଯେଉଁ ନିଷ୍ଠା, ଆନ୍ତରିକତା ଓ ଦୃଢ଼ ସଂକଳ୍ପ ରହିଥିଲା —ଆଜିର ସାହିତ୍ୟରେ ଅନୁସନ୍ଧାନ କଲେ ତାହା ହଠାତ୍ ମିଳୁନାହିଁ ! କାରଣ ସ୍ୱାଧୀନତାର ପରବର୍ତ୍ତୀ କାଳରେ ଏକ ବିରାଟ ଆଦର୍ଶ ପାଇଁ ତନୁକ୍ଷୟ ଓ ଆତ୍ମତ୍ୟାଗ ପରିବର୍ତ୍ତେ ଆଦର୍ଶର ଦୋହାଇରେ ଆତ୍ମପୁଷ୍ଟି ଓ ଆତ୍ମ ପ୍ରତାରଣା ଆମ ସମାଜର ଜୀବନଦର୍ଶନରେ ପରିଣତ ହୋଇଅଛି । ସେହିପରି ସାହିତ୍ୟ ମଧ୍ୟ ତାର ମୂଳ ପ୍ରେରଣାରୁ ବିଚ୍ଛିନ୍ନ ହୋଇ "ଆର୍ଟ" (art) ବା କଳା ପରିବର୍ତ୍ତେ ପରିଣତ ହୋଇଛି "ଆର୍ଟିଫିସ୍ (artfice) ବା କଳା କୌଶଳରେ । ଆଧୁନିକ ସାହିତ୍ୟ ଏଇଥିପାଇଁ ଏକାନ୍ତ ଭାବରେ ଟେକ୍‌ନିକ୍ ସର୍ବସ୍ୱ । କିନ୍ତୁ ତାର ମଧ୍ୟରେ ବେଳେ ବେଳେ ଏକ ବୃହତ୍ତର ଆଦର୍ଶର ପ୍ରେରଣାରେ, ବିଦ୍ରୋହ ଓ ବିପ୍ଳବ ମଧ୍ୟରେ ସମାଜଜୀବନ ଯେତେ-ବେଳେ ସବୁ ପ୍ରକାର ସାଂଳିସବାଦୀ ହିସାବ ଓ ମାପଚୁପ ଭୁଲି ଉଦ୍ଦୀପିତ ହୋଇ ଉଠେ ଶାଣିତ ଚେତନାରେ ; ସେତେବେଳେ କବିତା ମଧ୍ୟ ହୋଇ ଉଠେ ଅଗ୍ନିବୀଣା ! ସେଥିପାଇଁ ପଶୁଶକ୍ତିରେ ବଳୀୟାନ ନିଷାଦ ବିରୁଦ୍ଧରେ ବାଲ୍ମୀକିଙ୍କର ଅଭିଶାପ ଯେ ଆଦିକାବ୍ୟ ଆକାରରେ ଉଚ୍ଚାରିତ ହୋଇଥିଲା ; ତାହା କିମ୍ବଦନ୍ତୀ ନୁହେଁ, ତାହା ଏକ ସାହିତ୍ୟିକ ସତ୍ୟ !

କିନ୍ତୁ 'ଗଦ୍ୟ' ଏଠାରେ ନୀରବ କାହିଁକି ?

ଗଦ୍ୟ-ସାହିତ୍ୟ କଣ ଏପରି ପ୍ରେରଣାରେ ଅନୁପ୍ରେରିତ ହୁଏ ନାହିଁ ? ଗଦ୍ୟ କଣ କବିତା ପରି "ଆଣ୍ଟି ଏଷ୍ଟାବ୍ଲିସ୍‌ମେଣ୍ଟ" ବା କ୍ଷମତାର ବିଦ୍ରୋହୀ ହୋଇ ପାରେ ନା ? ଅନ୍ତତଃ ପୂର୍ବୋଲ୍ଲିଖିତ ପରିସ୍ଥିତିରେ ଯେତେ ସଂଖ୍ୟାରେ କବିତା ଲେଖା ଯାଇଥିବ, ତାର ଏକ ଶତାଂଶ ସୁଦ୍ଧା ଶୁଦ୍ଧ

ଗଦ୍ୟରେ ଲେଖାଯାଇ ନଥିବ ! ମନସ୍ତତ୍ତ୍ୱ ଦୃଷ୍ଟିରୁ ଏ ସମାଜତାତ୍ତ୍ୱିକ ପରିସ୍ଥିତିକୁ ମଧ୍ୟ ଅନୁଧ୍ୟାନ କରିବାର ଅଛି । 'କବିତା' ଏକ 'ଇମୋସନ' ବା ଆବେଗ ; କିନ୍ତୁ ଗଦ୍ୟ ହେଲା ହେତୁବାଦ ; ଯୁକ୍ତି, ତତ୍ତ୍ୱ ଓ ତଥ୍ୟର ସମାହାର । ତେଣୁ ଯେଉଁସବୁ ଆବେଗ ଆମ୍ଭମାନଙ୍କର ହୃଦୟର ସୂକ୍ଷ୍ମତମ ତନ୍ତ୍ରୀଗୁଡ଼ିକୁ ଦୋହଲାଇ ଦିଏ, ଗଦ୍ୟରେ ସେସବୁ ହୋଇ ଉଠେ ଖବର-କାଗଜୀ ବିବୃତି ଅଥବା ସମ୍ପାଦକଙ୍କୁ ପତ୍ର । ସାର୍ବଜନୀନ ସାହିତ୍ୟ-ସମାଜରେ ସେଥିପାଇଁ ଗଦ୍ୟ ତୁଳନାରେ କବିତା ଅଧିକ ସମ୍ଭ୍ରାନ୍ତ ଓ ଅଭିଜାତ ।

ତଥାପି ଇତିହାସରେ ଯେତେ ଯେତେ ବିରାଟ ବିପ୍ଳବ ରାଷ୍ଟ୍ରକ୍ଷେତ୍ରରେ ଅଥବା ଚିନ୍ତା ରାଜ୍ୟରେ ସଂଘଟିତ ହୋଇ ଆସିଅଛି, ଗଦ୍ୟ ହିଁ ହୋଇଛି ସେ ସବୁର ଧାରକ ଓ ବାହକ । ରବୀନ୍ଦ୍ରନାଥଙ୍କ କବିତା ଓ ଗାନ୍ଧୀଙ୍କ ଗଦ୍ୟ ଆଲୋଚନା କଲେ ଏହା ବେଶ୍ ବୁଝାପଡ଼ିବ ।

(କଳିଙ୍ଗ, ୧-୯-୭୯)



# ଲିଟଲ୍ ମାଗାଜିନ୍

ପ୍ରକୃତିର ସୃଷ୍ଟି ଲୀଳା ବହୁ ଅପଚୟ ମଧ୍ୟରେ । ସାହିତ୍ୟରେ ସୃଷ୍ଟିର ପ୍ରଖରତା ପାଇଁ ଭାଷା ଓ ଚିତ୍ରାଙ୍କନ ପାଇଁ ବର୍ଣ୍ଣର ବ୍ୟବହାରରେ କାର୍ପଣ୍ୟ ବା ମିତବ୍ୟୟିତା ପ୍ରୟୋଜନ ନିଶ୍ଚୟ । କିନ୍ତୁ କାର୍ପଣ୍ୟ ମଧ୍ୟରେ ସୃଷ୍ଟିକର୍ମ ସମ୍ଭବ ନୁହେଁ । ଗଙ୍ଗ ଶିଉଳୀରୁ ମୁଠାଏ ଝଡ଼ି ପଡ଼ିଲେ କଣ ଚଳନ୍ତା ନାହିଁ ? କିନ୍ତୁ ଗଙ୍ଗଶିଉଳୀର ଯଥାର୍ଥ ଶୋଭା, ରାଶି ରାଶି ଅସୁମାର ତଳେ ଝଡ଼ି ପଡ଼ିବାରେ । ଶରତର ଆକାଶ ପାଇଁ ଭେଲା ଭେଲା ଏତେ ମେଘରେ ବା କି ପ୍ରୟୋଜନ ଅଛି ? ଜଳଭାରହୀନ ଖଣ୍ଡେ ଉଦାସୀ ମେଘ, ଶରତର ବ୍ୟଞ୍ଜନା ପାଇଁ ଯଥେଷ୍ଟ । ପୁଣି ସୂର୍ଯ୍ୟାସ୍ତ ପାଇଁ ଟେନାଏ ନାଲିଆ ଆକାଶ କଣ ଯଥେଷ୍ଟ ନୁହେଁ ? ସେଠାରେ ବର୍ଣ୍ଣର ଏତେ ଅପଚୟ କାହିଁକି ? ପାରିପାର୍ଶ୍ୱିକ ପ୍ରକୃତିର ସୃଷ୍ଟି ବିଳାସ ମଧ୍ୟରେ ଏହିପରି ବହୁ ଉଦାହରଣ ଖୋଜିଲେ ମିଳିବ ।

"ଲିଟଲ" ମାଗାଜିନ ସବୁ ସେହିପରି ଏକ ସାହିତ୍ୟିକ ଅପଚୟ । କଥିତ ଅଛି, ବଙ୍ଗ ଦେଶରେ ତିନିଜଣ ସମଗୋତ୍ରୀ ଲେଖକ ଏକାଠି ହେଲେ, ଜନ୍ମ ନେଇଥାଏ, ଏକ କ୍ଷୀଣକାୟ କ୍ଷୁଦ୍ର ସାହିତ୍ୟ ପତ୍ରିକା ; ୟୁରୋପୀୟ ସାହିତ୍ୟଧାରାର ଅନୁସରଣରେ । ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏ ଆଭିମୁଖ୍ୟ ଧୀରେ ଧୀରେ ସମ୍ପ୍ରସାରିତ ହେବାରେ ଲାଗିଅଛି । ଏସବୁର ଜନ୍ମ କେଉଁ ସିଗାରେଟ ଧୂମାୟିତ ଟି' ଷ୍ଟଲ୍, କଫି ଷ୍ଟଲ, (ସ୍ୱଦେଶୀ ମଧ୍ୟ ହେଇ ନୁହେଁ ବୋଲି ହଲପ୍ କରି କୁହାଯାଇ ନ ପାରେ) ଅଥବା କେଉଁ ନିଭୃତ ପ୍ରକୋଷ୍ଠରେ । ଅନ୍ନପ୍ରାସନ୍ନ ଉତ୍ସବ ପାଳିତ ହୁଏ, ମୁଷ୍ଟି-ମେୟ ବିଦଗ୍ଧଙ୍କ ସ୍ୱୋଚ୍ଚାରିତ ହର୍ଷଧ୍ୱନି ଓ ପ୍ରକାଶ ପାଇଁ ରାଶି ରାଶି କବିତା ଓ କ୍ଷୁଦ୍ର ଗଳ୍ପର ପୁଷ୍ପବୃଷ୍ଟି ମଧ୍ୟରେ । କେଉଁ ଅନ୍ଧ ଗଳୀର ଅନାମଧେୟ ଛାପାଖାନା ଓ ଖ୍ୟାତି ଟଙ୍କପନ ଦାତାମାନଙ୍କ ପାଖକୁ ଦଉଡ଼ ଦଉଡ଼ "ଫାଟି ପଡ଼ିବାର ନିକୁଞ୍ଜସଞ୍ଚାର" ମଧ୍ୟରେ ଏହାର କ୍ଷୀଣ, ସଂଗ୍ରାମୀ ଶୈଶବ ଅତି-

ବାଞ୍ଛିତ ହୋଇଥାଏ । କୈଶୋରର ଆରମ୍ଭ ବେଳକୁ ଉଠେ ବାକ୍ସଆ ବଲ୍ ପାଇଁ ମୁଦ୍ରାକରର ଯଷ୍ଟି । ତା'ପରେ ସମ୍ପାଦକ ଓ ପ୍ରକାଶକଙ୍କ ଓଠରେ ଗୋଟିଏ ବିଷର୍ଣ୍ଣ ହସ ଓ ଗୋଟିଏ ଦୀର୍ଘଶ୍ୱାସ ମଧ୍ୟରେ ଉକ୍ତ "ଲିଟଲ୍ ମାଗାଜିନ"ର ଜୀବନଦୀପ ନିର୍ବାପିତ ହୋଇଯାଏ । ବାକ୍ସଆ ବଲ୍ ଓ ଅପ୍ରକାଶିତ କବିତା କେତେ ଖଣ୍ଡ ତାପରେ ପଡ଼ି ରହିଥାଏ ଏଠିସେଠି । ମାଗାଜିନ୍‌ର ଅକାଳ ମୃତ୍ୟୁ ଉପଲକ୍ଷେ "ଏଲିଜି" ବା ଶୋକ ଗୀତିକା ହୋଇ । ଆପାତ ଦୃଷ୍ଟିରେ ଏସବୁ ସାହିତ୍ୟିକ ଅପଚୟ, ନିଷ୍ଚୟ ! କାରଣ ଏସବୁ "କମରସିଆଲ" ସକ୍‌ସେସ୍ ହୋଇ ପାରିଲେ ନାହିଁ । କିନ୍ତୁ ଏପରି ଅପଚୟ ନ ଥିଲେ, ଆମ୍ଭମାନଙ୍କର ସାହିତ୍ୟର ଅଙ୍ଗନ ଯେ ଶ୍ରୀହୀନ ଲାଗନ୍ତା ; ସାହିତ୍ୟରେ ପ୍ରାଣ ଚପଳତା ଯେ ସୌଦାଗରୀ ସଫଳତା ମଧ୍ୟରେ ନିସ୍ପନ୍ଦ ହୋଇ ପଡ଼ନ୍ତା, ପୁଣି ସାହିତ୍ୟରେ ଯାହା କିଛି ଅନନ୍ୟତା ସେସବୁ ସହଜଲଭ୍ୟ, ସଫଳ ସୁଲଭତା ମଧ୍ୟରେ ଯେ କାଳ କାଳ ପାଇଁ ଅପ୍ରକାଶିତ ରହିଯାନ୍ତା, ସେଥିରେ ସନ୍ଦେହ ନାହିଁ । ବସ୍ତୁତଃ ବିଭିନ୍ନ ପ୍ରଗତିଶୀଳ ସାହିତ୍ୟରେ ସବୁ ନୂତନ ଉଲ୍ଲେଖଯୋଗ୍ୟ ଅଭିମୁଖ୍ୟ ଅଥବା ରଚନା ପ୍ରଥମେ ଏହି ଲିଟଲ୍ ମାଗାଜିନ୍ ମାନଙ୍କରେ ହିଁ ପ୍ରକାଶ ପାଇଥାଏ ।

"ଲିଟଲ୍-ମାଗାଜିନ୍" ସବୁ ଆମ୍ଭମାନଙ୍କର "ସଫଳତାବାଦୀ" ସମାଜର ବ୍ୟବସାଦାରୀ ବିଗ୍ଭରଧାରା ବିରୁଦ୍ଧରେ ଗୋଟିଏ ଗୋଟିଏ ପ୍ରତିବାଦ । ଯାହା କିଛି ମେଦବହୁଳ, ସେସବୁ ଯେ ସଫଳ ; ଯାହା କିଛି ଦରବାରୀମାନଙ୍କ ଦ୍ୱାରା ଅଧ୍ୟୁଷିତ, ସେସବୁ ଯେ ସମ୍ଭ୍ରାନ୍ତ ; ଯାହାକିଛି ଗତବନ୍ଧା, ସେ ସବୁ ଯେ ସନାତନ—ଏ ମିଥ୍ୟା ବିରୁଦ୍ଧରେ ଏ ଲିଟଲ୍ ମାଗାଜିନ୍ ସବୁ ଏକ ନିର୍ଭୀକ ଆହ୍ୱାନ ! ମାତ୍ର ସେଥିପାଇଁ "ଲିଟଲ୍"ମାନେ ଯଥାର୍ଥରେ "ଲିଟଲ" ହୋଇ ରହିବା ଆବଶ୍ୟକ । ସଫଳତାବାଦର ସ୍ଲୋଗାନରେ ସେମାନେ ସବୁ ଗୋଟିଏ ଗୋଟିଏ ନିଷ୍ପ୍ରାଣ ସାଇନ୍‌ବୋର୍ଡ ହେବା ଉଚିତ୍ ନୁହେଁ ।

ଇତି ମଧ୍ୟରେ କେତେକ ଓଡ଼ିଆ ଲିଟଲ-ମାଗାଜିନ ସମାଲୋଚନା ପାଇଁ ମୋର ହସ୍ତଗତ ହୋଇଛି । କିନ୍ତୁ ଦେଉଳ ଠାରୁ ବର୍ତ୍ତମାନ ମୁଖ-ଶାଳୀ ବଳି ପଡ଼ି ଥିବାରୁ ସେ ସବୁର ସମାଲୋଚନା ପରେ !

(କଳିଙ୍ଗ, ୭-୯-୬୯)



# ସାହିତ୍ୟରେ ଅଶ୍ଳୀଳତା

ସାହିତ୍ୟରେ ଅଶ୍ଳୀଳତାର ବିଚାର ଏ ପର୍ଯ୍ୟନ୍ତ ରହିଥିଲା ସମାଲୋଚକ ଗୋଷ୍ଠୀଙ୍କର ବାଦ ବିସମ୍ବାଦ ମଧ୍ୟରେ । ମାତ୍ର ପଶ୍ଚିମ ବଙ୍ଗଳାରେ ବର୍ତ୍ତମାନ ତାହା କୋର୍ଟ କଚେରୀ ମାନଙ୍କରେ ମାମଲା ଉପରକୁ ଆସିଗଲାଣି । ଏକାଧିକ ପ୍ରତିଷ୍ଠିତ ଲେଖକଙ୍କ ବିରୁଦ୍ଧରେ ଇତି ମଧ୍ୟରେ ଏକାଧିକ ମାମଲା ଦାୟର ହୋଇଗଲାଣି । ସମ୍ପ୍ରତି ଜଣେ ବର୍ଷୀୟାନ ସୁପ୍ରତିଷ୍ଠିତ ଲେଖକ, ବୁଦ୍ଧଦେବ ବୋଷଙ୍କର ଏକ ଉପନ୍ୟାସ [ରାତ୍‌ଭର୍ ବୃଷ୍ଟି] ବିରୁଦ୍ଧରେ ଅଶ୍ଳୀଳତା ମୋକଦ୍ଦମା ରୁଜୁ ହୋଇଅଛି ।

ଉପନ୍ୟାସ ଏବେ ଅବଶ୍ୟ ଆଉ ଜୀବନ ରହସ୍ୟ ଆବିଷ୍କାରର ମାଧ୍ୟମ ଅଥବା ଭାଷ୍ୟ ହୋଇ ରହିନାହିଁ । ଏହି ସୌଦାଗରୀ-ଯୁଗରେ ତାହା କେବଳ ଅନ୍ୟ ଏକ ପଣ୍ୟ ଦ୍ରବ୍ୟରେ ପରିଣତ ହେଲାଣି । ଲୋଭନୀୟ ପ୍ରଚ୍ଛଦପଟ ଓ ଗ୍ରନ୍ଥକର ବିଜ୍ଞାପନୀ ପ୍ରଚାର ଉପରେ ଏହା ଆଜି ବେଶି ପରିମାଣରେ ନିର୍ଭରଶୀଳ । ଏହି କାରଣରୁ "ସେକ୍‌ସ" ବା ଯୌନତା, ଏହାର ଏକ ଅପରିହାର୍ଯ୍ୟ ଉପାଦାନରେ ପରିଣତ ହୋଇଅଛି ।

ସାଇକେଲ, ମୋଟରଗାଡି ଠାରୁ ଆରମ୍ଭକରି ଟୁଥ୍‌ପେଷ୍ଟ୍ ଅଥବା ଗୁଡାଖୁ ପର୍ଯ୍ୟନ୍ତ ଆଜି ଏପରି-କୌଣସି ଦ୍ରବ୍ୟ ନାହିଁ—ଯାହାର କାଟତି ପାଇଁ, ନାରୀର ନଗ୍ନ ଦେହ ଓ ତାହାର ଯୌନ ଆବେଦନର ଅକୁଣ୍ଠିତ ବିଜ୍ଞାପନୀ ପ୍ରଚାର ନ ହେଉଛି ! ଉଦାହରଣ ସ୍ୱରୂପ···ତଉଲିଆର ବିଜ୍ଞାପନ ପାଇଁ ଆବଶ୍ୟକ, ବାଥରୁମ ଭିତରେ, ଏକ ଉଲଙ୍ଗିନୀ ମୂର୍ତ୍ତି, ଯାହାର ଅର୍ଦ୍ଧେକ କେବଳ ଆବୃତ୍ତ ବିଜ୍ଞାପିତ ତଉଲିଆରେ—ଟୁଥପେଷ୍ଟ ବିଜ୍ଞାପିତ ହୁଏ, କାମୋଦ୍ଦୀପିକା ଏକ ରମଣୀର ଦନ୍ତପଙ୍‌କ୍ତି ମଧ୍ୟରେ—ଉନଲେପିଲୋ ଗଦି ବିଜ୍ଞାପନର ପଣ୍ୟଲେଖ ହେଲା, ମିନି—ସ୍କାର୍ଟ ପିନ୍ଧା ଏକ ନାରୀର ପ୍ରତିଶ୍ରୁତିରେ···For sound sleep ! ଏ ସବୁ

ଉଦାହରଣର ଏକ କାଟାଲଗ ଏଠାରେ ନ ଦେଲେ ମଧ୍ୟ ଚଳିବ ! ଯେ
କୌଣସି ମାଗାଜିନ୍‌ର ପୃଷ୍ଠାରେ ଏହିପରି ଆଉରି ଅନେକ ନମୁନା,
କୌତୂହଳୀ ପାଠକ ସଂଗ୍ରହ କରି ପାରନ୍ତି ! ଆଜିର ସୌଦାଗରୀ ସଭ୍ୟତା
ଯେପରି ଏକ ଆବ୍ରୁହୀନ ବେଶ୍ୟାଶାଳାରେ ପରିଣତ ହୋଇଛି, ଯୌନତା
ସେ ସମାଜରେ ଅପରିହାର୍ଯ୍ୟ ।

ସେହି ସୂତ୍ରରେ ଉପନ୍ୟାସ ମଧ୍ୟ ସେହିପରି ଆଜି ଏକ ଖାଉଟି-
ପଣ୍ୟରେ ପରିଣତ ହୋଇ ପଡ଼ିଅଛି । ବହୁଳ ବିକ୍ରୀ ପାଇଁ ସେହି କାରଣରୁ ତ
ଯୌନତାର ପୁଟ ବେଶୀ ବେଶୀ ପରିମାଣରେ ପ୍ରୟୋଜନ ପଡ଼ୁଛି ।
ଏହି କାରଣରୁ ସାମ୍ପ୍ରତିକ ସାହିତ୍ୟରେ ଅଶ୍ଳୀଳତା ଉପସର୍ଗ ସ୍ୱାଭାବିକ ।
ଆଇନ ଅଦାଲତରେ ମୋକଦ୍ଦମା ଏହାର ସମାଧାନ ନୁହେଁ, ଅପରପକ୍ଷରେ
ସେପରି ମୋକଦ୍ଦମା ଦ୍ୱାରା ଏହି ଅଶ୍ଳୀଳ ପୁସ୍ତକମାନଙ୍କର କାଟତି ଆଉରି
ବଢ଼ିବାହିଁ କେବଳ ସାର ହେବ । ସାହିତ୍ୟ-ସୌଦାଗରମାନଙ୍କର
ସେଥିରେ ଲାଭ ଛଡ଼ା କ୍ଷତି ନାହିଁ !

ଅଥଚ ଏହା ଅସ୍ୱୀକାର କରିବାର ଉପାୟ ନାହିଁ ଯେ, ଏବେ ଯେଉଁ
ଶୃଙ୍ଗାର-ରସ ଚର୍ଚ୍ଚା "ଅଶ୍ଳୀଳ" ବା 'ଅବସିନ୍' ନାମରେ ଭର୍ତ୍ସିତ,
ଭାରତୀୟ ସାହିତ୍ୟ-ପରମ୍ପରାରେ ତାହା 'ଆଦିରସ' ରୂପେ ବହୁ ପ୍ରଂଶସିତ
ଓ ସମ୍ମାନିତ । ଏହାର ଅନ୍ୟ ନାମ ପୁଣି "ଉଜ୍ଜ୍ୱଳ ରସ"—ସେଥିରେ
ବିକୃତିର କାଳିମା ନାହିଁ ! ବସ୍ତୁତଃ ଭାରତୀୟ ସଂସ୍କୃତିରେ, (ସେକ୍‌ସ)
(Sex) ବିକୃତି ରୂପେ କଦାପି ବିବେଚିତ ନ ଥିଲା ! ଏହା ଥିଲା "ଆଦି"
ପୁଣି 'ଉଜ୍ଜଳ' । ବୈଦିକ ସାହିତ୍ୟ ଠାରୁ ଆରମ୍ଭ କରି ପ୍ରାକୃତ ସାହିତ୍ୟ
ଓ ସଂସ୍କୃତ ସାହିତ୍ୟ ମଧ୍ୟ ଦେଇ ଏଇ ଶୃଙ୍ଗାର-ରସର ବହୁ ବିଚିତ୍ର
ପ୍ରକାଶ ଘଟି ଆସିଅଛି ।

ସାହିତ୍ୟରେ ଅଶ୍ଳୀଳତାର ଆତଙ୍କରେ ଯେଉଁମାନେ ନିତ୍ୟ ଆତଙ୍କିତ,
ସେମାନେ ମହାକବି କାଳିଦାସଙ୍କ ବିଶ୍ୱପ୍ରସିଦ୍ଧ ନାଟକ "ଅଭିଜ୍ଞାନ—ଶକୁନ୍ତ-
ଳମ୍" ନାଟକର ତୃତୀୟ ଅଙ୍କରେ ନିମ୍ନୋକ୍ତ ଅଂଶଟି—ଥରେ ପାଠ କରିବା
ଉଚିତ୍ :

ଶକୁନ୍ତଳା—ମୁଞ୍ଚ ଦାବ ମଂ ! × × (ଛୁଡ଼ ମୋତେ)

ରାଜା ଦୁଷ୍ମନ୍ତ—ଭବନ୍ତୁ ମୋକ୍ଷାମି (ବେଶ୍ ତ ଛାଡ଼ିଦେବି)

ଶକୁନ୍ତଳା—କଦା ? (କେତେବେଳେ)

ରାଜା— ଅପରିକ୍ଷତ କୋମଳସ୍ୟ ଯାବତ୍
କୁସୁମସ୍ୟେବ ନବସ୍ୟ ଷଟ୍‌ପଦେନ
ଅଧରସ୍ୟ ପିପାସତା ମୟାତେ
ସଦୟଂ ସୁନ୍ଦରି ଗୃହ୍ୟତେ ରସୋହସ୍ୟା । ୭୪ ।

( ଅଚୁମ୍ବିତପୂର୍ବ ଅତିକୋମଳ ଏବଂ ସଦ୍ୟ ପ୍ରସ୍ଫୁଟିତ କୁସୁମରେ ମକରନ୍ଦ ପାନ କରି ତୃଷିତ ଭ୍ରମର ଯେପରି ତୃଷ୍ଣା ପ୍ରଶମିତ କରେ, ଠିକ୍ ସେହିପରି ଭାବରେ ସୁନ୍ଦରୀ ; ତୁମର ଏଇ ଅକ୍ଷତ, ସ୍ଫୁରିତ ଅଧରର ଆସ୍ୱାଦରେ ଯେତେବେଳେ ମୋର ପିପାସା ଶାନ୍ତ ହେବ, ସେତେବେଳେ ତୁମକୁ ମୁକ୍ତ ଦେବି ; ଏବେ ନୁହେଁ । )

ଏହା କହି ରାଜା କର୍ତ୍ତୃକ ଶକୁନ୍ତଳାଙ୍କ ମୁଖ ଉଠାଇ ଧରିବାର ଚେଷ୍ଟା ଓ ଶକୁନ୍ତଳା କର୍ତ୍ତୃକ ଦୁଇ ହାତରେ ତାହାର ନିବାରଣ ।"

ଆଜିର ଅତ୍ୟାଧୁନିକ ମଞ୍ଚ ଓ 'ଉଦ୍‌ଭଟ'— (absurd) ନାଟକ ଯୁଗରେ ଏ ଦୃଶ୍ୟ ପରିବେଷଣ କରିବାର ଦୁଃସାହସ କେତେଜଣ ପ୍ରଯୋଜକ ପୋଷଣ କରିବେ ଅଥବା କେତେଜଣ ଦର୍ଶକ ବା ତାହା ବରଦାସ୍ତ କରିପାରିବେ ? ମାତ୍ର ଭାରତୀୟ ସଂସ୍କୃତି ଓ ସମାଜ ଏକଦା ଏ ସବୁକୁ ଶ୍ରେଷ୍ଠ ସାହିତ୍ୟର ସ୍ୱୀକୃତି ଦେବା ପାଇଁ କୁଣ୍ଠିତ ହୋଇ ନଥିଲା ।

କିନ୍ତୁ ଏ ସମ୍ପର୍କରେ ଦୁଷ୍ମନ୍ତଙ୍କୁ ଶକୁନ୍ତଳା ଦେଇଥିବା ଉତ୍ତରଟି ମଧ୍ୟ ବିଶେଷ ଭାବରେ ସ୍ମରଣୀୟ । ଦୁଷ୍ମନ୍ତଙ୍କ ଉପରୋକ୍ତ ବିଶ୍ରମ୍ଭାଳାପର ଉତ୍ତରରେ ଶକୁନ୍ତଳା କହିଥିଲେ···

ଶକୁନ୍ତଳା—ପୋରବ ରକ୍‌ଖ ଅବିଣଅଂ ମଅଣସଂତତ୍ତା ବି ମେହ୍ମ ଅହଣୋ ପହବାମି । ( ତୁମର ଅଶାଳୀନତାକୁ ସଂଯତ କର । ମୁଁ କାମାତୁରା ହେଲେ ହେଁ ସ୍ୱୈରିଣୀ ନୁହେଁ । )

ସାହିତ୍ୟରେ ଏହାହିଁ ଶ୍ଳୀଳତା ବା ଶାଳୀନତାର ଚିରନ୍ତନ ନିୟାମକ। ପ୍ରତ୍ୟେକ ଶୁଦ୍ଧ ସାହିତ୍ୟର ଏହାହିଁ ଲକ୍ଷଣ—ତାହା ଶ୍ଳୀଳ ନୁହେଁ ବା ଅଶ୍ଳୀଳ ନୁହେଁ। ସେଥିରେ ଇନ୍ଦ୍ରିୟାତୁରତା ଥାଇପାରେ ; ମାତ୍ର ସ୍ୱେଚ୍ଛାଚାରୀ ହେବା ଉଚିତ ନୁହେଁ। ଶିଳ୍ପର ସଂଯମ ଓ ସୁରୁଚିର ଅନୁଶାସନ ମଧ୍ୟରେ ତାହା ନିର୍ଜିତ ହେବା ଆବଶ୍ୟକ। କିନ୍ତୁ ଆଜିର ସୌଦାଗରୀ "ସେକ୍‌ସ" ବା ଯୌନତା ଏହାଠାରୁ ସ୍ୱତନ୍ତ୍ର।

(କଳିଙ୍ଗ—୭-୭-୬୯)



# ସାଂପ୍ରତିକ କବିତା (୨)

ଜଣେ ତରୁଣ କବି, ଶ୍ରୀ ସଦାଶିବ ଦାସ (ଯୁଗ୍ମ ସମ୍ପାଦକ, ଓଡ଼ିଆ ଯୁବଲେଖକ ସମ୍ମିଳନୀ) ଏକ ପତ୍ରରେ ଲେଖିଛନ୍ତି…

"…ସକାଳ ଡାକ ଖୋଲିବା ମାତ୍ରେ ଏହା ପ୍ରଜାପତି ପରି ଡେଣା ମେଲିବ କିମ୍ବା ଗୋଟିଏ ପାଗଳର ହାସ୍ୟୋଦ୍ଦୀପକ ପ୍ରଳାପ ପରି ଏହା ଆପଣଙ୍କ ସାମ୍ବାଦିକ ଜୀବନ-ପ୍ରବାହକୁ ଚହଲାଇ ଦେଇ ପାରିବ, ତା ହୁଏତ ମୁଁ ଜାଣେନାଁ। ତଥାପି ତରୁଣ ଗୋଷ୍ଠୀଙ୍କର ଗିଣି ଗିଣି କବିତାର ଗତି ଆଗକୁ ନାଁ ପଛକୁ ତାହା ହୁଏତ ଜାଣିବା ଆପଣଙ୍କଠୁ ମୋ ପାଇଁ ଆଦୌ ସହଜ ସୁଲଭ ମନେ ହେଉନି। କ୍ଷୁଦ୍ରଗଳ୍ପ "ପାଣିଚିଆ ରୋମାନ୍ସ" ସତ କଥା—ପ୍ରବନ୍ଧ ସମ୍ପର୍କରେ ନ କହିବା ଭଲ। ତଥାପି କବିତାଗୁଡ଼ାକ କ'ଣ ପାଣିଚିଆ ରୋମାନ୍ସରେ ପରିଣତ ହୋଇନି କି ? ଅନୁଶୋଚନା କରି ଲାଭ ବା କ'ଣ ଅଛି ? ଅପାଚୁଡ଼ା ଧାନରେ କ'ଣ ଖାଲି ଧାନ ଥାଏ ? ଥାଏ ମଧ୍ୟ କିଛି ଅଗାଡ଼ି। ମୋର ମନେ ହୁଏ ଆଜିର କବିତା ଏ ରକମ ପାଣିଚିଆ ପ୍ରେମକୁ ପହିଲେ ସ୍ଥାନ ଦେଇଛି। ପ୍ରାୟ ପ୍ରତ୍ୟେକ କବିତା ଏଥିରୁ ମୁକ୍ତ ନୁହନ୍ତି। କାରଣ ପ୍ରବୃତ୍ତି ସହ ମୁକାବିଲା କରି ସେଥିରୁ ପାଚୁଡ଼ା ପାଚୁଡ଼ି ପରେ ଗୋଟାଏ କିଛି ନିଛକ ସତ୍ୟର ଉପସ୍ଥାପନା କରିବା ଯେ କେତେବର୍ଷ ସାଧନାର କଥା ତାହା ଆପଣଙ୍କ ପକ୍ଷେ ଅଜଣାର ବିଷୟ ନୁହେଁ। ସାଧନା ପାଇଁ ଦିନ ନୁହେଁ, ବରଂ ଯୁଗ ଦରକାର ହେଲି ବେଳକୁ ଆମ୍ଭମାନଙ୍କୁ ଆତ୍ମପ୍ରକାଶର ନିଶା ଏତେ ପ୍ରବଳ ଭାବରେ ଘାରୁଛି ଯେ ଆମେରିକାର କେତେକ ହିପ୍‌ପୀ L. S. D. ଖାଇ ସୂର୍ଯ୍ୟଙ୍କୁ ପୂରାଦମ୍‌ରେ ଚାହିଁ ଦୃଷ୍ଟିଶକ୍ତି ହରାଇ ବସିଲା ଭଳି, ଆମେ ଅନେକ କିଛି ପାଇବା ଆଶାରେ ଆମ ନିଜ ଗନ୍ତବ୍ୟ ପଥକୁ ଭୁଲିଯାଉଛୁ। ଏଇ ତ ଆମ ତରୁଣ ଗୋଷ୍ଠୀଙ୍କର ଗତି ; ଯାହା ମୁଁ ନିଜେ ନିଜ କଥାରୁ କହୁଛି। ମୋ' ମତରେ

ନିଜ କଥାକୁ ନିଜେ ବିଗ୍ଭର ବସିଲେ କିଛି ନାଁ କିଛି ଆତ୍ମଗତ ସଜଡ଼ାସଜଡ଼ିର ପ୍ରାରମ୍ଭିକ ବ୍ୟବସ୍ଥା ହୋଇ ଯାଇଥାଏ ।

"ଗୋଷ୍ଠୀଗଠନ ସଂପର୍କରେ ଆପଣଙ୍କ ମତାମତ ଗ୍ରହଣୀୟ । କିନ୍ତୁ ଗୋଷ୍ଠୀ ନାମରେ କବି ଯଦି ଛଳନା କରିବାର ଅଭ୍ୟାସ ଆରମ୍ଭ କରେ, ତାହା ଗୋଷ୍ଠୀଗତ ଛଳନାରେ ପରିଣତ ହୁଏ । ତା ହେଲେ ଅନ୍ୟମାନେ ନାଗ୍ଭର । ···ସେମାନେ ଯଦି 'ସେକ୍ସ' (Sex)କୁ ସାହିତ୍ୟର ସର୍ବସ୍ୱ ଅର୍ଥାତ୍ କବିତାର ଶ୍ରେଷ୍ଠ ଚିନ୍ତନ ବୋଲି ବିଗ୍ଭରନ୍ତି ଓ ତଦନୁଯାୟୀ କବିତାକୁ ଯୌନ-ବ୍ୟଭିଗ୍ଭରର ପଟ୍ଟା ପାଉଁଶରେ ପରିଣତ କରନ୍ତି, ତାହେଲେ ସେ ସଂଘକୁ ଯୌନପ୍ରଗ୍ଭରର ଆଡ୍ଡାରେ ପରିଣତ କରନ୍ତୁ । ଗୋଷ୍ଠୀର ଗତିପଥ, ଲକ୍ଷ୍ୟ ତଥା ଆଦର୍ଶକୁ ସେମାନେ ସେମାନଙ୍କର ଇଚ୍ଛାନୁଯାୟୀ ନିୟନ୍ତ୍ରଣ କରିପାରନ୍ତି । କିନ୍ତୁ ତାର ପ୍ରତିକ୍ରିୟା ପ୍ରତି ନଜର ଦେବା ସେମାନଙ୍କର କାମ୍ୟ । କ୍ରିୟା ସଙ୍ଗେ ସଙ୍ଗେ ପ୍ରତିକ୍ରିୟାକୁ ନଜର ନ ଦେଇ ଯଦି କୌଣସି ଗୋଷ୍ଠୀଗଠନ କରାଯାଏ, ତାହା ଆଧୁନିକତା ପରିବର୍ତ୍ତେ ଗୁଡ଼ାଏ ଆକସ୍ମିକତାର ସ୍ୱର ସୃଷ୍ଟି କରିବ । ···ମୋର ବ୍ୟକ୍ତିଗତ ଅନୁରୋଧ ଆପଣ "ସାହିତ୍ୟ ଓ ସମାଜ" ଶିରୋନାମାରେ ଏ ସଂପର୍କରେ କିଛି ଲେଖନ୍ତୁ ।"

× × ×

ଏ କଥା ସତ୍ୟ ଯେ—ସାଂପ୍ରତିକ କବିତା (ସବୁ ସାହିତ୍ୟରେ) କାଳୋତ୍ତୀର୍ଣ୍ଣ ସଫଳତାର ସଙ୍କେତ ମାତ୍ର, ତାହାର ପୂର୍ଣ୍ଣତା ନୁହେଁ । ତେବେ କବିତାର ମୂଲ୍ୟାୟନ ସଂପର୍କରେ ଇଂରାଜୀ ସମାଲୋଚକ ଜେ. ବି. ପ୍ରିଷ୍ଟଲେ (Literature and Western man) ଗୋଟିଏ ସୂତ୍ର ଦେଇଛନ୍ତି —"a poem is literature until we are convinced it is not, wheras a novel is not literature until we are convinced that it is."

ସାହିତ୍ୟ-ପଦବାଚ୍ୟ ନୁହେଁ ବୋଲି ହୃଦ୍‌ବୋଧ ହେବା ପର୍ଯ୍ୟନ୍ତ ପ୍ରତ୍ୟେକ କବିତା ସାହିତ୍ୟର ଅନ୍ତର୍ଭୁକ୍ତ । କିନ୍ତୁ ଉପନ୍ୟାସ କ୍ଷେତ୍ରରେ ଏହା ଠିକ୍ ବିପରୀତ, ଅର୍ଥାତ୍ ସାହିତ୍ୟ ପଦବାଚ୍ୟ ବୋଲି ବିବେଚିତ

ହେବା ପରେ କେବଳ ଏହା ସାହିତ୍ୟର ଅନ୍ତର୍ଭୁକ୍ତ ହୋଇଥାଏ । ବ୍ୟାବହାରିକ ଦୃଷ୍ଟିରୁ ଏ ନିୟାମକକୁ ଅସ୍ୱୀକାର କରିବାର ଉପାୟ ନାହିଁ । ସ୍ୱାପ୍ରତିକ କବିତାକୁ ଏହି ନିୟାମକରେ ମଧ୍ୟ ବିଗୃର କରିବାପାଇଁ ପଡ଼ିବ । କିନ୍ତୁ କେବଳ ଜଣେ ମାତ୍ର ସମାଲୋଚକ ଅଛନ୍ତି ଯିଏ ଏହାର ଚରମ ମୂଲ୍ୟାୟନ କରି ପାରନ୍ତି—ତାଙ୍କ ନାମ ସନାତନ ପାଠକ, ମାର୍ଫତ୍ ମହାକାଳ !

ତେବେ ଇତିମଧ୍ୟରେ ଅର୍ଥନୀତିର 'ନକଲ ମୁଦ୍ରା ଅସଲ ମୁଦ୍ରାକୁ ନିର୍ବାସିତ କରେ' ସୂତ୍ର ଅନୁସାରେ ଶୁଦ୍ଧ କବିତା ସବୁ "ମନ୍ଦ କବି ଯଶଃ ପ୍ରାର୍ଥୀ"ମାନଙ୍କର କାବ୍ୟାସ୍ଫାଳନ ମଧ୍ୟରେ ନିର୍ବାସିତ ହୋଇଯିବା ଅସମ୍ଭବ ନୁହେଁ । କିନ୍ତୁ ଅର୍ଥନୀତି, ସମାଜନୀତି ଓ ରାଜନୀତି କ୍ଷେତ୍ରରେ ମଧ୍ୟ ପରିସ୍ଥିତି ସେତିକିରୁ ବେଶୀ ନୁହେଁ । ଅର୍ଥାତ୍ ପ୍ରତ୍ୟେକ ଶୁଦ୍ଧ ସାହିତ୍ୟ ଏସବୁ ବିଡ଼ମ୍ବନା ମଧ୍ୟରେ ଅମର ଓ କାଳଜୟୀ ।

ପୂର୍ବ ଆଲୋଚନାରେ କହିଛି ସ୍ୱାପ୍ରତିକ କବିତା ଆତ୍ମପ୍ରକାଶର କବିତା ! ଆତ୍ମପ୍ରକାଶ ପାଇଁ ବ୍ୟାକୁଳତା କେବଳ ସାହିତ୍ୟ କ୍ଷେତ୍ରରେ ନୁହେଁ, ସମାଜ ଓ ରାଜନୀତି କ୍ଷେତ୍ରରେ ମଧ୍ୟ ଏହା ଆଉରି ବିସ୍ଫୋରକ ଆକାରରେ ପ୍ରକାଶ ପାଉଅଛି । ସେଥିପାଇଁ ଇଂଲଣ୍ଡର ଦେଖାଦେଖି ଭାରତରେ ଅଠରବର୍ଷ ବୟସ୍କ କିଶୋର-କିଶୋରୀମାନେ ସୁଦ୍ଧା ଭୋଟ ଅଧିକାର ଦାବୀ କଲେଣି । ଶତାବ୍ଦୀ ପରେ ଶତାବ୍ଦୀ ବ୍ୟାପି ସ୍ଥବିରତାର କମ୍ବଳତଳୁ ରୁଦ୍ଧଶ୍ୱାସ ଯୌବନ ଆଜି ଆତ୍ମପ୍ରକାଶ ପାଇଁ ଚେଇଁ ଉଠିଛି । ଆଜିର ସମାଜର ନାମ ତେଣୁ 'ପର୍‌ମିସିଭ୍' (Permissive) ଏହା ରିପ୍ରେସିଭ୍ (Repressive) ନୁହେଁ । ଏ ସମାଜରେ ସବୁ ଚଳେ···ମିନି ସ୍କାର୍ଟ, ମିନି ଶାଢ଼ୀ ଠାରୁ ଆରମ୍ଭ କରି ଉଲ୍ଲଙ୍ଗ-ଅଭିନୟ ପର୍ଯ୍ୟନ୍ତ । ଯୌନ ସ୍ୱାଧୀନତା ସେଥିପାଇଁ ଏହି 'ପର୍‌ମିସିଭ' ସମାଜର ଏକ ମୌଳିକ ସ୍ୱାଧିକାର ବା ଫଣ୍ଡାମେଣ୍ଟାଲ୍ ରାଇଟ୍ ରୂପେ ଘୋଷିତ ହୈଲାଣି । ଏହାର ପରିଣତି ଅବଶ୍ୟ ଅକାଳବାର୍ଦ୍ଧକ୍ୟ, ଅବସାଦ ଓ ରୁଗ୍‌ଣ ବିଷର୍ଣ୍ଣତା । ମାତ୍ର ସେ ଚେତାବନୀ ଶୁଣିବା ପାଇଁ ଆଜି ଧୈର୍ଯ୍ୟ ବା ଅଛି କାହାର ? ଚନ୍ଦ୍ରଯାନର ଗତି ଘଣ୍ଟାକୁ ଛତିଶହଜାର ମାଇଲ । (ସେକେଣ୍ଡକୁ କେତେ ?) ଏହି ପରିପ୍ରେକ୍ଷୀରେ ଆତ୍ମପ୍ରକାଶ ପାଇଁ ଆଜିର ତରୁଣ କବି-ସମାଜରେ

ବ୍ୟାକୁଳତା ତେଣୁ ଯେପରି ସ୍ୱାଭାବିକ, ସାମ୍ପ୍ରତିକ କବିତାରେ ଯୌନତାର ସଂକ୍ରମଣ ସେହିପରି ମଧ୍ୟ ସହଜବୋଧ୍ୟ। ସାହିତ୍ୟ ଓ କଳାକୁ କିଛିକାଳ ଏହାରି ମଧ୍ୟ ଦେଇ ଗତି କରିବାପାଇଁ ପଡ଼ିବ।

ଆଧୁନିକ ସାହିତ୍ୟରେ ଓ କଳାର ବିକାଶରେ ବିଭିନ୍ନ ଗୋଷ୍ଠୀର ଭୂମିକା ମଧ୍ୟ ଏହି ପୃଷ୍ଠଭୂମିରେ ଅନସ୍ୱୀକାର୍ଯ୍ୟ। କଳା ଓ ସାହିତ୍ୟର ଇତିହାସରେ ପ୍ରତ୍ୟେକ 'ମୁଭ୍‌ମେଣ୍ଟ' ଏହି ସବୁ ଗୋଷ୍ଠୀ ମଧ୍ୟରେ ଜନ୍ମଲାଭ କରି ବିକଶିତ ହୋଇଥାଏ। ଏ ଆଭିମୁଖ୍ୟ ଫରାସୀ ସାହିତ୍ୟ ଓ କଳାରେ ବିଶେଷ ଭାବରେ ସୁସ୍ପଷ୍ଟ। ଶୃଙ୍ଖଳାବଦ୍ଧ, ଧ୍ରୁପଦୀ ଶାସ୍ତ୍ରୀପୂତା ବା "କ୍ଲାସିସିଜମ୍"ର ପ୍ରତିବାଦରେ ଊନବିଂଶ-ଶତାବ୍ଦୀର "ରୋମାଣ୍ଟିକ୍ ମୁଭ୍‌ମେଣ୍ଟ" ଜନ୍ମଲାଭ କରିଥିଲା ଏହିପରି ବିଭିନ୍ନ ଗୋଷ୍ଠୀ ମଧ୍ୟରୁ। ଆମ ସାହିତ୍ୟରେ ସେହିପରି ଗୋଷ୍ଠୀଗଠନ ତେଣୁ ଅଭିନନ୍ଦନୀୟ—ମାତ୍ର ତାହା ଅବଶ୍ୟ ବିଶ୍ୱ-ନିନ୍ଦୁକ ଗୋଷ୍ଠୀରେ ପରିଣତ ହେବା ଉଚିତ ନୁହେଁ।

(କଳିଙ୍ଗ ତା ୧୦-୮-୭୯)



# ଅବକ୍ଷୟ ଓ ସାହିତ୍ୟ

ରାଷ୍ଟ୍ର ଓ ସମାଜ ଠାରୁ ଆରମ୍ଭ କରି ରାଜନୀତି ଓ ପରିବାର ପର୍ଯ୍ୟନ୍ତ, ସବୁଆଡ଼େ ଆଜି ଭଙ୍ଗାଭଙ୍ଗିର . ପାଲ୍-ପ୍ରତିଷ୍ଠିତ ଓ ପାରମ୍ପରିକ ଉପରେ ସବୁଆଡ଼େ ଆକ୍ରମଣର ହୁଲ୍ଲୋଡ଼ ! ଆକ୍ରମଣ କେବଳ ଆଙ୍ଗିକ ନୁହେଁ ; ଏହା ଆତ୍ମିକ ମଧ୍ୟ ! ପରିଚିତ ପୁରାତନ ପୃଥିବୀ ଆଜି ଭୂଷୁଡ଼ି ପଡ଼ୁଛି । ତାହାର ଧୂଳିଧୂଳା, ଭଙ୍ଗା ଇଟା, ସୁର୍କିର ଜଞ୍ଜାଳ ମଧ୍ୟରେ ମନୁଷ୍ୟ ତେଣୁ ରୁଦ୍ଧଶ୍ୱାସ—ସେହି ଅନୁସାରେ ତାର ରୁଚି ମଧ୍ୟ ! ବସ୍ତୁତଃ ଚଳିତ ଶତାବ୍ଦୀ ଆରମ୍ଭରେ ପ୍ରଥମେ ଚିତ୍ରକଳା ଓ ପରେ ସାହିତ୍ୟ ମାଧ୍ୟମରେ "ପାରମ୍ପରିକ" ଉପରେ ଆରମ୍ଭ ହୋଇଥିଲା ଯେଉଁ ଆକ୍ରମଣ, ଆଜିର ଅବକ୍ଷୟ ମଧ୍ୟରେ ତାହା ଏକ କ୍ଲାଇମାକ୍ସ ଆଡ଼େ ଗତି କରୁଛି ! ସାହିତ୍ୟ ଏଥିରୁ ବାଦ୍ ଯିବାର କଥା ନୁହେଁ ।

ଆଜିର କବିତା "ମାନୁଫାକ୍‌ଚର୍ଡ୍" ହେଉଛି କମ୍ପ୍ୟୁଟର ଯନ୍ତ୍ରରେ, ଗଢ଼ା ଚାଲିଛି ସିମେଣ୍ଟ ଓ କଂକ୍ରୀଟ୍‌ରେ, ସର୍ବାଧୁନିକ ନାଟ୍ୟମଞ୍ଚରେ ଦର୍ଶକମାନେ ଯାହା ଦେଖୁଛନ୍ତି ତାହା ହୁଏତ "କାମସୂତ୍ର"ର ପ୍ରାକ୍‌ଟିକାଲ୍ ଡେମନ୍‌ଷ୍ଟ୍ରେସନ୍ ନୋହିଲେ ନିର୍ଘାତ ଅନ୍ଧାର । ଆଉ ଯେଉଁ ଫ୍ରାନ୍‌ସରେ ଉପନ୍ୟାସ ସାହିତ୍ୟର ଆଦ୍ୟବିକାଶ ଘଟିଥିଲା ଓ ଉପନ୍ୟାସର ଅଭିବ୍ୟକ୍ତିରେ ଯେଉଁ ଫ୍ରାନ୍‌ସର ଅବଦାନ ସବୁଠାରୁ ବେଶୀ, ଆଜି ସେହି ଫ୍ରାନ୍‌ସ ଦେଶରେ କେହି ଆଉ ଉପନ୍ୟାସ ପଢ଼ୁନାହାନ୍ତି । ସୁସମୃଦ୍ଧ ଇଂରାଜୀ ସାହିତ୍ୟରେ ମଧ୍ୟ ଉପନ୍ୟାସ ଓ କଥା ସାହିତ୍ୟ କ୍ରମେ ଅଚଳ ହୋଇ ଉଠିଲାଣି ! ...ସାହିତ୍ୟ ଜଗତରେ ଏ ସବୁ ବିକୃତି ସେହି ଅବକ୍ଷୟର ଲକ୍ଷଣ !

କବିତା, ନାଟକ ଓ ଉପନ୍ୟାସ ପରେ କ୍ଷୁଦ୍ରଗଳ୍ପ ବର୍ତ୍ତମାନ ଏହାର ଶୀକାର ହୋଇ ପଡ଼ିଅଛି । ଭାରତୀୟ ସାହିତ୍ୟରେ ବଙ୍ଗଳା ସାହିତ୍ୟ ଏକଦା କ୍ଷୁଦ୍ରଗଳ୍ପରେ ଅତି ସୁସମୃଦ୍ଧ ଥିଲା । ମାତ୍ର ବଙ୍ଗଳା ସାହିତ୍ୟରେ

ଆଜ କ୍ଷୁଦ୍ରଗଳ୍ପର ମରୁଡ଼ି । କଲିକତାର "ଦେଶ" ସାପ୍ତାହିକ ଏ ସମ୍ପର୍କରେ ଲେଖିଛନ୍ତି···

"ଶ୍ରେଷ୍ଠ ଗଳ୍ପର ସମାଦର ହ୍ରାସ ପାଉଛି—ଏଥି ପାଇଁ ବିଳାପ ପ୍ରାୟଶଃ ନାନା ଲେଖକଙ୍କ ନାନା ପ୍ରବନ୍ଧରେ ଶୁଣା ଯାଇଥାଏ । ବର୍ତ୍ତମାନ ମାନି ନେବା ଛଡ଼ା ଗତ୍ୟନ୍ତର ନାହିଁ ଯେ, ନାନା ପତ୍ର ପତ୍ରିକାରେ ବେଳେବେଳେ ଦୁଇଟା ଗୋଟାଏ ପ୍ରକାଶ ପାଇଲେ ହେଁ, ଏ ଜନଷଟି ପ୍ରତି ସାଧାରଣ ପାଠକର ପ୍ରୀତି ଯଥେଷ୍ଟ କମିଯାଇଛି ! ଅର୍ଥାତ୍ ତିରିଶ ପୃଷ୍ଠାର ଗୋଟିଏ ରଚନାକୁ ଉପନ୍ୟାସ ବୋଲି ଚଳାଇ ନେଲେ ପାଠକମାନଙ୍କର ଆପତ୍ତି ବଦଳରେ ଆଗ୍ରହ ବୃଦ୍ଧି ପାଇବ । କିନ୍ତୁ ପନ୍ଦର କୋଡ଼ିଏ ପୃଷ୍ଠାର ଗୋଟିଏ ରଚନାକୁ ଗଳ୍ପ କହିଲେ ପାଠକ ଆକୃଷ୍ଟ ହେବେ ନାହିଁ । ଏ ଗୋଟାଏ ଗୋଲକଧନ୍ଦା—କିନ୍ତୁ ଏହା ଏଇପରି ଚାଲିଛି !

"ବହି କିଣିବା ସମୟରେ (ଅବଶ୍ୟ କେତେଜଣ ବା ଆଜିକାଲି ବହି କିଣନ୍ତି ? କହିବାକୁ ଗଲେ ବହି ଉପହାର ଦେବାର ଚଳଣି ଆଉ ପ୍ରାୟ ନାହିଁ ।) କିମ୍ବା ଲାଇବ୍ରେରୀରୁ ବହି ଆଣିବା ବେଳେ, ପାଞ୍ଚ ଛଅଟି ନିଟୋଳ ଶ୍ରେଷ୍ଠଗଳ୍ପ ସମନ୍ୱିତ ଖଣ୍ଡେ ବହି ଆଣିବା ପାଇଁ ପାଠକ ଅରାଜି । କିନ୍ତୁ ଗୋଟାଏ ଶ୍ରେଷ୍ଠ ଗଳ୍ପକୁ ଫୁଲାଇ ଫମ୍ପାଇ ଉପନ୍ୟାସ ଆକାରରେ ଠିଆ କରାଇ ଦେଲେ ପାଠକର ଆଉ ଆପତ୍ତି ନଥାଏ । ପରିଣାମରେ ବିଷୟଟି ଗୋଟିଏ ଦୁଷ୍ଟଚକ୍ରରେ ପରିଣତ ହୋଇଛି । ପାଠକର ଆଗ୍ରହ ନାହିଁ ବୋଲି ପ୍ରକାଶକମାନେ ଶ୍ରେଷ୍ଠଗଳ୍ପର ବହି ଛାପିବାକୁ ଚାହାନ୍ତି ନାହିଁ । ବହି ଛପା ହୁଏ ନାହିଁ ବୋଲି ଲେଖକମାନଙ୍କର ଏ ସମ୍ପର୍କରେ ଆଗ୍ରହ କମି ଆସୁଛି । ଫଳତଃ ବଙ୍ଗଳା ସାହିତ୍ୟର ଏହି ଶାଖାଟି ହ୍ରାସମାନ ହତମାନ !

"ସାରା ବିଶ୍ୱରେ ଶ୍ରେଷ୍ଠଗଳ୍ପର ଏଇ ଦଶା । ଏଥିରୁ ସାନ୍ତ୍ୱନା ମିଳେ ନାହିଁ । କାରଣ ବଙ୍ଗଳା-ସାହିତ୍ୟରେ ଏଇ ଶାଖାଟି ଥିଲା ବିଶେଷ ଉନ୍ନତ । ଅନେକଟା ଗର୍ବ କରିବା ପରି ।"

(ଦେଶ—୩୦.୧.୭୦)

ବିଳମ୍ବର ଏ ସଂକ୍ରମଣ, ଅବକ୍ଷୟର ଏ ଆକ୍ରମଣ ଓଡ଼ିଆ କ୍ଷୁଦ୍ରଗଳ୍ପକୁ

କେଉଁ ପରିମାଣରେ ଗ୍ରାସିଛି, ପାଠକମାନେ ତାହା ସ୍ଥିର କରିବେ। କିନ୍ତୁ ଓଡ଼ିଆ କ୍ଷୁଦ୍ରଗଳ୍ପରେ ମଧ୍ୟ ପ୍ରବୀଣମାନେ ଆଜି ନୀରବ ଓ ସେମାନଙ୍କର ସୃଷ୍ଟିକର୍ମ ସ୍ତିମିତ, ସେଥିରେ ସନ୍ଦେହ ନାହିଁ।

ତେବେ ପାଠକମାନଙ୍କର ଉପନ୍ୟାସ-ସ୍ପୃହା ବୃଦ୍ଧି ପାଇଥିବାରୁ କ୍ଷୁଦ୍ର ଗଳ୍ପର ପ୍ରତିଷ୍ଠା ଯେ ମ୍ରିୟମାଣ, ଏଥି ସହିତ ଏକମତ ହୋଇପାରିବା କଠିନ। ଶିଳ୍ପ ବିକାଶ ଓ ତଜ୍ଜନିତ କର୍ମବ୍ୟସ୍ତତା ହେତୁ, ଉପନ୍ୟାସ ପାଠ ପାଇଁ ପାଠକମାନଙ୍କର ସ୍ପୃହା କମି, କ୍ଷୁଦ୍ର ଗଳ୍ପ ପ୍ରତି ଆଦର ପ୍ରକାଶ ପାଇଥିଲା ବୋଲି, କ୍ଷୁଦ୍ରଗଳ୍ପର ପ୍ରତ୍ୟେକ ଐତିହାସିକ ତଥା ସମାଲୋଚକ ଏକମତ ଅଟନ୍ତି। ସେହି ପରିପ୍ରେକ୍ଷୀରେ ବଙ୍ଗଳା ସାହିତ୍ୟରେ କ୍ଷୁଦ୍ରଗଳ୍ପ ପରିବର୍ତ୍ତେ ଉପନ୍ୟାସ ପ୍ରତି ଆଜି ଅଧିକତର ସ୍ପୃହା ପରିଲକ୍ଷିତ ହେଉଛି କାହିଁକି ? ଏହାର ଗୋଟିଏ କାରଣ ହୋଇପାରେ—ଉପନ୍ୟାସ ତୁଳନାରେ କ୍ଷୁଦ୍ରଗଳ୍ପ ଅଧିକ କଳାନିଷ୍ଠ ଓ 'ସୋଫିଷ୍ଟିକେଟେଡ୍' ଥିବାରୁ ଆଜିର ମନୋରଞ୍ଜନ-ବ୍ୟାକୁଳ, ପଣ୍ୟଧର୍ମୀ ଯୁଗରେ ପାଠକ ଉପନ୍ୟାସ ପ୍ରତି ଅଧିକ ଆକୃଷ୍ଟ ହେଉଛି। ମାତ୍ର ଏହାର ଅସଲ କାରଣ ହେଲା, ଗଳ୍ପ ତାହାର ସ୍ୱଧର୍ମ ହରାଇ ହୁଏତ ରମ୍ୟରଚନା ନୋହିଲେ ଗଦ୍ୟ କବିତା ହେବା ପାଇଁ ଚେଷ୍ଟା କରୁଛି। ଅବାନ୍ତର ରହସ୍ୟମୟତା ଓ ଦୁର୍ବୋଧତା ମଧ୍ୟରେ ଏହା ପାଠକ ସମାଜରୁ ନିଜକୁ ସ୍ୱେଚ୍ଛାକୃତ ଭାବରେ ଦୂରେଇ ନେଉଛି। ଗଳ୍ପ ହୋଇ ଉଠୁଛି ଗଳ୍ପହୀନ। ପାଠକ ତେଣୁ କ୍ଷୁଦ୍ରଗଳ୍ପ ଛାଡ଼ି ଉପନ୍ୟାସ ଆଡ଼େ ଯେ ମୁହାଁଉଛି, ସେଥିରେ ଆଶ୍ଚର୍ଯ୍ୟ କ'ଣ ?

କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ଏ ଅବକ୍ଷୟ ଓ ବିକୃତି "ଆଣ୍ଟି ନଭେଲ୍"ର ସ୍ୱାଭାବିକ ପ୍ରଭାବ। "ଆଣ୍ଟି ନଭେଲ୍"ରେ ଚରିତ୍ର ନାହିଁ, ଘଟଣା ନାହିଁ, ଫର୍ମ୍ ନାହିଁ। ଜେମ୍ସ ଜୟସ୍ ଅଥବା ସାର୍ତ୍ରେଙ୍କ ଉପନ୍ୟାସର ଚେତନା-ପ୍ରବାହ-ଶୈଳୀର ସବୁ ଅବାରିତତା ମଧ୍ୟରେ ଯେଉଁ ଅନୁଶାସନ ଥିଲା, ଆଜିର "ଆଣ୍ଟି-ନଭେଲ୍"ରେ ତାହା ସୁଦ୍ଧା ବିରଳ। ସେଇଥିପାଇଁ ତ ଉପନ୍ୟାସର ଜନ୍ମଭୂମି ଫ୍ରାନ୍ସ ଦେଶରୁ ଉପନ୍ୟାସ ଆଜି ବିଲୀନପ୍ରାୟ।

କ୍ଷୁଦ୍ରଗଳ୍ପ କିନ୍ତୁ ମୌଳିକ ଭାବରେ ଫର୍ମ ବା ଆଙ୍ଗିକବଦ୍ଧ ଏକ ସୃଷ୍ଟି ! ଘଟଣା ତାର ପ୍ରାଣ। ସେ ଘଟଣା ଗୋଟାଏ ଚିନ୍ତାର ତରଙ୍ଗ ହୋଇ-

ପାରେ, ଅଥବା "ଷ୍ଟିଲ-ଲାଇଫ୍-ଚନ" ପରି ଗୋଟାଏ ସ୍ଥାଣୁ ମୁହୂର୍ତ୍ତ, ନୋହିଲେ ପରିବେଶ ହୋଇପାରେ । ମାତ୍ର ଏଥିରେ ଆଙ୍ଗିକ, ଘଟଣା ଓ ଚରିତ୍ର ରହିବା ପାଇଁ ବାଧା । ଏସବୁ ଯଦି ନ ରହିଲା, ତାହେଲେ ଏ ଶ୍ରେଣୀର ରଚନାସବୁ ଆଉ ଯାହାହେଉ ପଛେ, କଦାପି କ୍ଷୁଦ୍ରଗଳ୍ପ ପଦ-ବାଚ୍ୟ ହୋଇ ପାରିବ ନାହିଁ ।

"ମିନ-ସ୍କାର୍ଟ"ର କ୍ରମକ୍ଷୟମାଣ ଦୈର୍ଘ୍ୟ ଅଥବା ସମାଜ ବନ୍ଧନର ଛିନ୍ନ ଗ୍ରନ୍ଥି ପରି, ସାହିତ୍ୟର ପ୍ରତ୍ୟେକ ବିଭବ ଆଜି ଅବକ୍ଷୟ ମଧ୍ୟରେ କ୍ରମେ ସତ୍ତ୍ୱହୀନ ହେବା ପାଇଁ ଯାଉ ନାହିଁ ତ ?

(କଳିଙ୍ଗ, ୧୭.୧.୭୦)



# ଯୁବ ଲେଖକ

ବିଶିଷ୍ଟ ଇଂରେଜୀ ଲେଖକ ଓ ଚିନ୍ତକ ଡିସ୍‌ରାଏଲୀ ଥରେ କହିଥିଲେ— "almost everything that is great has been done by youth." (ଯାହା କିଛି ମହାନ୍, ସେ ସବୁ ଯୌବନରେ ହିଁ ସାଧିତ ହୋଇଥାଏ ।) ଯୌବନ ହେଲା ସୃଷ୍ଟି କର୍ମର ଦୃପ୍ତାନ୍ତ ମଧ୍ୟାହ୍ନ । ତାପରେ ମଧ୍ୟାହ୍ନ ସୂର୍ଯ୍ୟ, ଅପରାହ୍ଣର ଆକାଶରେ ଅବତରଣ କରେ ଲମ୍ବା ଲମ୍ବା ଛାଇ ପକାଇ । ଛାଇ କିନ୍ତୁ ସୃଷ୍ଟି ନୁହେଁ, ସୃଷ୍ଟିର ଛଳନା ।

ଇତିହାସରେ ବହୁ କ୍ଷେତ୍ରରେ ପ୍ରାତଃସ୍ମରଣୀୟ ବହୁ ବ୍ୟକ୍ତିଙ୍କ ଜୀବନୀ ଓ ସାଧନା ଆଲୋଚନା କଲେ ; ଡିସ୍‌ରାଏଲୀଙ୍କ ଏ ଉକ୍ତିର ସତ୍ୟତା ପ୍ରମାଣିତ ହୋଇଥାଏ । ଗୌତମ ବୁଦ୍ଧ ମହାବୋଧି ଲାଭ କରିଥିଲେ ୩୦ ବର୍ଷ ବୟସରେ । ଶଙ୍କରାଚାର୍ଯ୍ୟ ୩୦ ବର୍ଷ ବୟସ ବେଳକୁ ଜଗଦଗୁରୁ ରୂପେ ସ୍ୱୀକୃତି ଲାଭ କରି ସାରିଥିଲେ । ଶ୍ରୀ ଚୈତନ୍ୟଙ୍କୁ ତାଙ୍କର ପୂର୍ବସଖା ଅଦ୍ୱୈତାଚାର୍ଯ୍ୟ ପ୍ରମୁଖ "ଅବତାର" ରୂପେ ଅଭିଷିକ୍ତ କରିଥିଲେ ତାଙ୍କର ୨୪ ବର୍ଷ ବୟସରେ ।

କେବଳ ଧର୍ମସାଧନାର ଇତିହାସରେ ନୁହେଁ, ଯୁଦ୍ଧ ଓ ରାଷ୍ଟ୍ରନୀତିର ଇତିହାସରେ ମଧ୍ୟ ଏ ଆଭିମୁଖ୍ୟ ଲକ୍ଷ୍ୟ କରାଯାଇପାରେ । ମହାତ୍ମା ଗାନ୍ଧୀ ୩୦ ବର୍ଷ ବୟସ ବେଳକୁ ଦକ୍ଷିଣ ଆଫ୍ରିକାରେ ଜେନେରାଲ ସ୍ମଟ୍‌ସ୍‌ଙ୍କ ସହିତ ଚୁକ୍ତିରେ ସ୍ୱାକ୍ଷର କରି ଦକ୍ଷିଣ ଆଫ୍ରିକାସ୍ଥ ଭାରତୀୟ ଜନତାର ଦୃଷ୍ଟିରେ ତ୍ରାଣକର୍ତ୍ତା ରୂପେ ପ୍ରତିଷ୍ଠିତ ହୋଇ ପାରିଥିଲେ । ଭାରତରେ ମଧ୍ୟ ସେତେବେଳକୁ ସେ ହୋଇ ସାରିଥିଲେ "ମହାତ୍ମା" । ଇଂଲଣ୍ଡ ଇତିହାସର ଏଡ୍‌ୱାର୍ଡ଼ ଦି ବ୍ଲାକ୍‌ପ୍ରିନ୍‌ସ ୧୭ ବର୍ଷ ବୟସରେ ହୋଇ ପାରିଥିଲେ "ଦି ବାଟେଲ୍ ଅଫ୍ କ୍ରେସୀ"ର ବିଜେତା ! ଜୋଆନ୍-ଅଫ୍-ଆର୍କ ୧୭ ବର୍ଷ ବୟସରେ ଇଂଲଣ୍ଡ ଠାରୁ ଅରଲିନ୍‌ସ୍ ଅଧିକାର କରିଥିଲେ । ରୁଷିଆର

ଇଭାନ୍-ଦ-ଟେରିବଲ୍ ୧୭ ବର୍ଷ ବୟସରେ ଜାର୍ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ଆଲେକ୍‌ଜାଣ୍ଡାର ୨୧ ବର୍ଷ ବୟସ ବେଳକୁ ଇତିହାସରେ ଶ୍ରୀଘୋଷିତ ହୋଇ ସାରିଥିଲେ "ଦ ଗ୍ରେଟ୍" ।

କିନ୍ତୁ ତାରୁଣ୍ୟର ଏ ଜୟଯାତ୍ରା ସାହିତ୍ୟ କ୍ଷେତ୍ରରେ ଅଧିକ ସୁସ୍ପଷ୍ଟ । ସେକ୍‌ସପିୟର [ଜନ୍ମ ଖ୍ରୀ: ୧୫୬୪] ଅପରାଜେୟ ନାଟ୍ୟକାର ରୂପେ ୨୭ ବର୍ଷ ବୟସ ବେଳକୁ ପ୍ରସିଦ୍ଧି ଅର୍ଜନ କରି ସାରିଥିଲେ । ମିଲ୍‌ଟନ୍ (ଜନ୍ମ ଖ୍ରୀ: ୧୬୦୮) ୩୦ ବର୍ଷ ବୟସ ବେଳକୁ ରଚନା କରି ସାରିଥିଲେ Licidas ପ୍ରଭୃତି ତାଙ୍କର ପ୍ରସିଦ୍ଧ ରଚନା ! ଫରାସୀ ନାଟ୍ୟକାର ମଲିୟେର୍ (ଜନ୍ମ ଖ୍ରୀ: ୧୬୨୨) ୨୩ ବର୍ଷ ବୟସ ବେଳକୁ ସେକ୍‌ସ-ପୀୟରଙ୍କ ଯଶପ୍ରଭାକୁ ମଳିନ କରି ସାରିଥିଲେ । ଜେନ୍ ଅଷ୍ଟିନ୍ (ଜନ୍ମ ଖ୍ରୀ: ୧୭୭୫) ମୋଟେ ୪୨ ବର୍ଷ ବୟସରେ ମୃତ୍ୟୁ ମୁଖରେ ପଡ଼ିବା ବେଳକୁ ଇଂରାଜୀ ଉପନ୍ୟାସ ସାହିତ୍ୟରେ ସୁପ୍ରସିଦ୍ଧ ହୋଇ ସାରିଥିଲେ । ଭଲ୍‌ଟାୟାର୍ (ଜନ୍ମ ଖ୍ରୀ: ୧୬୯୦) ୩୧ ବର୍ଷ ବୟସ ବେଳକୁ ଫରାସୀର ଅପ୍ରତିଦ୍ୱନ୍ଦୀ କବି ଓ ବାଗ୍ମୀର ପ୍ରତିଷ୍ଠା ଲାଭ କରି ପାରିଥିଲେ । ରୁଷୋ (ଜନ୍ମ ଖ୍ରୀ: ୧୭୧୨) ୩୭ ବର୍ଷ ବୟସରେ ହୋଇ ପାରିଥିଲେ ୟୁରୋପର ସୁପ୍ରସିଦ୍ଧ ତାତ୍ତ୍ୱିକ ଓ ପ୍ରାବନ୍ଧିକ । ୨୪ ବର୍ଷ ବୟସରେ ତରୁଣ କବି ଗେଟେ (ଜନ୍ମ ଖ୍ରୀ: ୧୭୪୯) କାଳଜୟୀ "ଫଷ୍ଟ" ରଚନା କରି ସାରିଥିଲେ । ଇଂରାଜୀ କବି ଓ୍ୱାର୍ଡ଼ସ୍‌ଓ୍ୱାର୍ଥ (ଜନ୍ମ ଖ୍ରୀ: ୧୭୭୦)ଙ୍କର ସବୁ ପ୍ରସିଦ୍ଧ କୃତି ରଚିତ ହୋଇ ସାରିଥିଲା ୩୮ ବର୍ଷ ବୟସ ପୂର୍ବରୁ ।

ଭାରତୀୟ ନର୍‌ଲେକର୍ ୨୫ ବର୍ଷ ବୟସ ପୂର୍ବରୁ ସୁଦ୍ଧା ଆଇନ୍-ଷ୍ଟାଇନ୍‌ଙ୍କ ଥିଓରୀ-ଅଫ୍-ରିଲେଟିଭିଟୀ ଗଣିତ ସୂତ୍ରରେ ପ୍ରମାଣ କରି ସାରି-ଥିଲେ କେତେକ ତ୍ରୁଟି ଓ ଅପୂର୍ଣ୍ଣତା । ଯୌବନର ସିଦ୍ଧି ତେଣୁ ମନୁଷ୍ୟର ସଂସ୍କୃତି ଓ ସଭ୍ୟତାର ଇତିହାସ ।

ଯୌବନ ଯେଉଁଠାରେ ସୃଷ୍ଟି ସାଧନାରେ ପ୍ରଖର—ସେଠାରେ ସେ କାହାର ସ୍ୱୀକୃତିର ଅପେକ୍ଷା ରଖେ ନାହିଁ । ଶିଶୁ ଉଦ୍ଭିଦର କୋମଳ ସବୁଜିମା ମଧ୍ୟରେ ଥାଏ ଏପରି ଏକ ଅପ୍ରତିରୋଧ୍ୟତା, ଯାହା ପାଷାଣ ଶିଳାର କଠୋର ଆବରଣୀକୁ ସୁଦ୍ଧା ବିଦୀର୍ଣ୍ଣ କରି ଆତ୍ମଘୋଷଣା କରେ । କିନ୍ତୁ

ଶିଶୁ ଉଦ୍ଭିଦର ସବୁଜିମା ଯେପରି ଗମ୍ଭୀର, ତାର ଆତ୍ମପ୍ରକାଶ ଶକ୍ତି ସେହି-ପରି ସାଧନାନିଷ୍ଠ ଥିବା ଆବଶ୍ୟକ।...ମାତ୍ର ଇତିହାସ ଓ ପ୍ରକୃତିର ଏହି ଅଭିଜ୍ଞତା ଭାରତର ବିଶେଷତଃ ଓଡ଼ିଶାର ଯୁବଚେତନାରେ ତଥାପି ଉଦ୍‌ବୁକ୍ତ ହୋଇ ପାରି ନାହିଁ। ଏଠାରେ ଯୌବନ, ସିଦ୍ଧିର କାଳ ନୁହେଁ ଏହା "ପ୍ରୋବେସନରସିପ୍‌" ବା "ସାଗରେଦି"ର କାଳ ରୂପେ ବିବେଚିତ। ସୂର୍ଯ୍ୟ-ସନ୍ଧାନ ଏଠି ମଧ୍ୟାହ୍ନରେ ନୁହେଁ; ଅପରାହ୍ଣର ପଡ଼ନ୍ତ ବେଳରେ। ତରୁଣ ଏଠାରେ ତେଣୁ ନିଜର ଏକକ ସାଧନା ପରିବର୍ତ୍ତେ ପ୍ରତିଷ୍ଠିତ ପ୍ରବୀଣମାନଙ୍କ ବିରୁଦ୍ଧରେ ନେତିବାଚୀ ବିଦ୍ରୋହ ବା ବିସ୍ଫୋରଣରେ କେବଳ ଶତମୁଖ। ଏହା କିନ୍ତୁ ସ୍ୱାଭାବିକ ନୁହେଁ।

ଓଡ଼ିଆ ଯୁବଲେଖକ ସମ୍ମିଳନୀ ଜନ୍ମଲାଭ କରିଥିଲା ଏହିପରି ବିଦ୍ରୋହ ମଧ୍ୟରୁ। କିନ୍ତୁ ଏ ବିଦ୍ରୋହ ଇତି ମଧ୍ୟରେ ଆମ୍ଭମାନଙ୍କ ସାହିତ୍ୟ ଚିନ୍ତା ଓ ସୃଷ୍ଟି କର୍ମରେ କୌଣସି ନୂତନ ଦିଗ୍‌ବଳୟ କେଉଁ ପରିମାଣରେ ଉନ୍ମୋଚିତ କରିଛି, ଭାବୀକାଳର ଐତିହାସିକ ତାହାର ମୂଲ୍ୟାୟନ କରିବ। କିନ୍ତୁ ଉପସ୍ଥିତ ବର୍ତ୍ତମାନରେ ଏହା ଗତି କରି ଚାଲିଛି ଏକ ନୂତନ "ଗାଦି" ବା "ଏଷ୍ଟାବ୍ଲିସ୍‌ମେଣ୍ଟ" ଆଡ଼େ।

ତାରୁଣ୍ୟର ଧର୍ମ, ରିଜେକ୍‌ସନ୍ ବା ପ୍ରତ୍ୟାଖ୍ୟାନ। ତରୁଣ ଯଦି ଅତୀତର ସବୁ ପଦ୍ଧତି, ପରମ୍ପରା ଓ ମୂଲ୍ୟବୋଧକୁ ତାହାର ସମାଲୋଚନା-ଶୀଳ ପ୍ରଜ୍ଞାରେ ବିଶ୍ଳେଷଣ କରି ନୂତନର ସମ୍ଭାବନାରେ ସେସବୁ ପ୍ରତ୍ୟାଖ୍ୟାନ ନ କଲା, ତାହାଲେ ତରୁଣ ଓ ଅଳ୍ପ ବୟସର ଜରଦ୍‌ଗବମାନଙ୍କ ମଧ୍ୟରେ ପାର୍ଥକ୍ୟ କ'ଣ ? ତାରୁଣ୍ୟ ସେଠାରେ ପରିଣତ ହୁଏ ଆଉ ଏକ ନୂତନ ନ୍ୟସ୍ତସ୍ୱାର୍ଥରେ। ପାଶ୍ଚାତ୍ୟ ଦେଶରେ ତାରୁଣ୍ୟର ଜୟଯାତ୍ରା ଏହି ରିଜେକ୍‌ସନ୍ ମଧ୍ୟରୁ ନୂତନ ସଂସ୍କୃତି, ନୂତନ ସାହିତ୍ୟ ଏପରିକି ନୂତନ ସମାଜର ସନ୍ଧାନ କରୁଥିବା ବେଳେ, ଆମର ତରୁଣ, ପୁରାତନର ସ୍ୱୀକୃତି ପାଇଁ ବ୍ୟାକୁଳ। ତରୁଣ କଥାରେ ଚାହେଁ ବନ୍ଧନମୁକ୍ତି। କିନ୍ତୁ ବନ୍ଧନର ଗ୍ରନ୍ଥି ତ ତାହାର ନିଜ ହୃଦୟ ଭିତରେ। ସେ ବନ୍ଧନରୁ ମୁକ୍ତି ମିଳିପାରେ କେବଳ ପ୍ରଥମେ ନିଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାରେ। ଯିଏ ନିଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା ନ କରିଛି, ତାହାର ବିଦ୍ରୋହ ଅନ୍ୟ

ବିରୁଦ୍ଧରେ ଦ୍ରୋହାଚରଣ ମାତ୍ର । ସେପରି ବିଦ୍ରୋହ କେବଳ ସାମୟିକ ଶାନ୍ତି ଭଙ୍ଗରେ ପର୍ଯ୍ୟବସିତ ହୁଏ । ତାହା ଆନାର୍କି !

ଯୁବ ଲେଖକର ସ୍ୱୀକୃତି ଓ ପ୍ରତିଷ୍ଠା ତାହାର ନିଜର ସୃଷ୍ଟି କର୍ମ ମଧ୍ୟରେ । ସ୍ୱୀକୃତି ସେଠାରେ ସାର୍ଟିଫିକେଟ ନୁହେଁ ବା ପ୍ରବୀଣମାନଙ୍କ ବିରୁଦ୍ଧରେ "ଯୁଦ୍ଧଂ ଦେହି" ଧ୍ୱନି ମଧ୍ୟରେ ସେପରି ସ୍ୱୀକୃତି ମିଳିବ ନାହିଁ । ପ୍ରତ୍ୟେକ ଲେଖକର ଏକ ମାତ୍ର "କମିଟ୍‌ମେଣ୍ଟ" ତାହାର ସାହିତ୍ୟ ପ୍ରତି । ସମ୍ମିଳନୀ ତାହାର ଅନୁପ୍ରେରକ ହେବା ଆବଶ୍ୟକ, ସ୍ୱୀକୃତିଲାଭର ରଣାଙ୍ଗନ ନୁହେଁ । ସ୍ୱାଧୀନତା ଉଡ଼ିଆ ସାହିତ୍ୟ ଆଜି ଏକ ସୃଷ୍ଟିମୁଖର ଉଜ୍ଜୀବନ ପ୍ରତୀକ୍ଷା କରୁଥିଲା ବେଳେ, ଓଡ଼ିଆ ଯୁବ ଲେଖକ ସମ୍ମିଳନୀ ସେଥିରେ ସହାୟକ ହେଉ ।

(କଳିଙ୍ଗ ୨୫.୧.୭୦)



# ଫର୍ ଆଡ଼ଲ୍‌ଟ୍‌ସ୍ ଓନ୍‌ଲୀ

ଅଶ୍ଳୀଳତା-ନିରୋଧ ବିଲ୍ ବିତର୍କର ପ୍ରସ୍ତାବିତ ପାର୍ଲିଆମେଣ୍ଟରେ ମୀରବ ନ ହେଉଣୁ, ପଞ୍ଜାବ ହାଇକୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ଶ୍ରୀ ଜି. ଡ଼ି. ଖୋସଲାଙ୍କ ଅଧ୍ୟକ୍ଷତାରେ ଗଠିତ ଫିଲ୍ମ-ସେନ୍‌ସରସିପ୍-ଏନ୍‌କ୍ୱାୟାରି କମିଟିର ରିପୋର୍ଟ ବିନାମେଘେ ବଜ୍ରପାତ ପରି ଅନେକଙ୍କୁ ଯେ ଚକିତ ଓ ସ୍ତବ୍ଧ କରିଦେଇଅଛି, ସେଥିରେ ସନ୍ଦେହ ନାହିଁ। ଜଣେ ପ୍ରାକ୍ତନ ପ୍ରଧାନ ବିଚାରପତିଙ୍କ ଦ୍ୱାରା ପୌରୋହିତ ଏହି ପ୍ରାଜ୍ଞ ମଣ୍ଡଳୀ ବ୍ୟବସ୍ଥାପତ୍ର ଦେଇଛନ୍ତି ଯେ ଭାରତୀୟ ଚଳଚ୍ଚିତ୍ରରେ ଚୁମ୍ବନ, ଆଲିଙ୍ଗନ ଓ ଉଲଙ୍ଗ ଦେହର ପ୍ରଦର୍ଶନ, ଅଶ୍ଳୀଳ ବିବେଚିତ ହେବା ଉଚିତ ନୁହେଁ। ଅଶ୍ଳୀଳ ବିଷୟଟି ବହୁ ବିତର୍କିତ ଥିବାରୁ ଏଠାରେ କମିଟିର ସିଦ୍ଧାନ୍ତ ରିପୋର୍ଟର ନିଜସ୍ୱ ଭାଷାରେ ଉଦ୍ଧାର କରିବା ନିରାପଦ :

"If in telling the story it is logical, relevant, or necessary to depict a passionate kiss or a nude human figure there should be no question of excluding the shot provided the theme is handled with delicacy and feeling aiming at aisthetic expression and avoiding all suggestion of purience or lascivousness", (···ଗଳ୍ପର ଉନ୍ମୀଳନରେ ଗୋଟିଏ ଆବେଗଦଗ୍ଧ ଚୁମ୍ବନ କିମ୍ବା ଉଲଙ୍ଗ ଦେହର ପ୍ରୟୋଜନ ପଡ଼ିଲେ ଏହାକୁ ବାଦ୍ ଦେବା ଉଚିତ ହେବ ନାହିଁ। ମାତ୍ର ବିଷୟ ବସ୍ତୁର ଉପସ୍ଥାପନାରେ ସୌକୁମାର୍ଯ୍ୟ, ଆବେଗ ଓ ନାନ୍ଦନିକତା ଥିବା ଆବଶ୍ୟକ। ଏଥିରେ କୌଣସି ପ୍ରକାର କାମୋଦ୍ଦୀପନା କିମ୍ବା ଅଶ୍ଳୀଳତା ସୂଚିତ ହେବା ଉଚିତ ନୁହେଁ।)

ବସ୍ତୁତଃ ଯେ କୌଣସି ସାହିତ୍ୟିକ କିମ୍ବା କଳାକୃତିରେ, ଶ୍ଳୀଳତା ଅଶ୍ଳୀଳତା ବିଚାରର ଏ ନିୟାମକ ବହୁ ମାନ୍ୟତାପ୍ରାପ୍ତ ଓ ଫିଲ୍ମ୍

ସେନ୍‌ସର୍‌ସିପ୍‌ ଏନ୍‌କ୍ୱାଏରି କମିଟୀ ଏଠାରେ କିଛି ଗୋଟାଏ ଅଶ୍ରୁତ ନୂଆ କଥା କହିନାହାନ୍ତି । ଭାରତୀୟ ସଂସ୍କୃତ, ପ୍ରାକୃତ ସାହିତ୍ୟ ଠାରୁ ବିଭିନ୍ନ ମଧ୍ୟଯୁଗୀୟ ଭାଷା ସାହିତ୍ୟରେ ଏହାର ଅଭାବ ନାହିଁ । ତଥାପି କମିଟୀର ଏହି ସିଦ୍ଧାନ୍ତ ଭାରତୀୟ ଚଳଚ୍ଚିତ୍ର ନିର୍ମାତା, ଅଭିନେତା, ଅଭିନେତ୍ରୀ ମହଲରେ କଠୋର ପ୍ରତିବାଦ ସୃଷ୍ଟିପାତ କରିଅଛି । ଏହାଦ୍ୱାରା ଅଶ୍ଳୀଳତାକୁ ଅଧିକ ପ୍ରସାରିତ ଓ ପ୍ରୋତ୍ସାହିତ କରାଯିବ ବୋଲି ଆଶଙ୍କା ମଧ୍ୟ ପ୍ରକାଶ ପାଇଅଛି ।

ବୌଦ୍ଧିକ ଚେତନା ଭାରତରେ ଯେପରି ଏକ ବିଶିଷ୍ଟ ପ୍ରକୃତିରେ ପରିଣତ ହୋଇଛି, ସେଥିରେ ଏ ପ୍ରକାର ପ୍ରତିବାଦରେ କୌଣସି ବୈଚିତ୍ର୍ୟ କିମ୍ବା ଅସ୍ୱାଭାବିକତା ନାହିଁ । ଏଠାରେ ହାଣ୍ଡି ଗଳିଯାଏ କିନ୍ତୁ ପିମ୍ପୁଡ଼ି ଗଳେନା । ଭାରତୀୟ ଚଳଚିତ୍ର ବିଶେଷତଃ ବହୁ ହିନ୍ଦୀ ଚଳଚିତ୍ରରେ ଯଦି କୌଣସି ଅଭିମୁଖ୍ୟ ଥାଏ, ତାହାହେଲେ ତାହା ହେଉଛି ଅମାର୍ଜିତ ଯୌନତା । ଏ ସବୁକୁ ଯୌନ-ବ୍ୟବସାୟ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ବକ୍ସ-ଅଫିସ ଦ୍ୱାହିରେ ଏ ଆଭିମୁଖ୍ୟ ଅନ୍ୟ ଭାଷାଭାଷୀ ଫିଲ୍ମକୁ କ୍ରମେ ପ୍ରସାରିତ ହେଉଛି ଓ ଆମର ଶିଷ୍ଟ ସମାଜ ତାହାକୁ ବେଶ୍‌ ଗ୍ରହଣ କରୁଅଛନ୍ତି । ଏ ଫିଲ୍ମ ସବୁ ପୁଣି "ଆଡ଼ଲ୍‌ଟସ୍‌—ଓନ୍‌ଲି" ବା କେବଳ ପ୍ରାପ୍ତ-ବୟସ୍କଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ, ଏ ସବୁ ୟୁନିଭର୍‌ସାଲ 'U' ସାର୍ଟିଫିକେଟ୍‌ ପାଉଛନ୍ତି । କମିଟୀ ଏହିପରି ଏକ ଏକ ଫିଲ୍‌ମ୍‌ର ଗୋଟିଏ ଦୃଶ୍ୟ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି···"ନାୟକ ନାୟିକା କିଛି ସମୟ ଉଦ୍ଦଣ୍ଡ ଭାବରେ ନାଚି ନାଚି ପାହାଡ ଉପରେ ବେଶ୍‌ ଗଡ଼ାଗଡ଼ି ହେଲେ । ଏ ଗଡ଼ାଗଡ଼ିଟା ମଧ୍ୟ ଭାବର ଗୋଟାଏ ସଙ୍କେତ ବା ଅଭିନୟ । ଗଡ଼ାଗଡ଼ି ବେଳେ ନାୟକଙ୍କ କପୋଳଟି ନାୟିକାଙ୍କ ପୀନସ୍ତନ ଉପରେ ନିବଦ୍ଧ । ତା'ପରେ ନାୟକ ପାହାଡ ଉପରୁ ହଠାତ୍‌ କୁଦା ମାରିଲେ ଗୋଟାଏ ଗଛ ଡାଳକୁ । ସେଠାରୁ ଝୁଲି ଝୁଲି ଦୁଇ ଗୋଡ଼ ଛନ୍ଦି ନାୟିକାଙ୍କୁ ସେ ଏକ କଇଁଚି ପଟ କଣ (କଟକୀ ଭାଷାରେ) ମାରିଲେ ।"

ଖୋସଲା କମିଟୀ ବଡ଼ ଗମ୍ଭୀର ଭାବରେ କହିଛନ୍ତି··ଏ ଦୃଶ୍ୟଟି ବଡ଼ ସୂଚନାଗର୍ଭିତ । ଏହାର ଗୋଟାଏ ଅଶ୍ଳୀଳ ବ୍ୟଞ୍ଜନା ରହିଛି ।

ଏତିକିରେ କେବଳ ଦୃଶ୍ୟର ଶେଷ ନୁହେଁ । ନାୟିକା ମଧ୍ୟ ଇତି ମଧ୍ୟରେ କମ୍ ଅନୁପ୍ରାଣିତ ହୋଇ ଉଠି ନାହାନ୍ତି । ନାୟକଙ୍କ କବଳରୁ ମୁକୁଳି ସେ ମଧ୍ୟ ଆରମ୍ଭ କରି ଦେଇଛନ୍ତି ଯୌନିକ ନୃତ୍ୟ । ସ୍ୱଳ୍ପ ଛପା ପରିଚ୍ଛଦରେ ଅନାବୃତ ଅଥବା ସୂଚନାତ୍ମକ ଭାବରେ ଆବୃତ ତାଙ୍କର ନିତମ୍ବ ନୃତ୍ୟରସରେ କେତେବେଳେ ଆଗକୁ ତ ଆଉ କେତେବେଳେ ପଛକୁ କେତେବେଳେ ବାମପାଖକୁ ତ ଆଉ କେତେବେଳେ ଦକ୍ଷିଣକୁ ; ଦୋଳାୟିତ ନିତମ୍ବ ସହିତ ତାଳ ମାନ ରକ୍ଷାକରି ନାୟିକାଙ୍କ ସ୍ତନର ସୁଦ୍ଧା ସେହି କଳଶୀ-ନାଚରେ ବିରତି ନାହିଁ ।

ଖୋସଲା କମିଟି ଏ ଦୃଶ୍ୟକୁ ବେଶ୍ ଅଭିନିବେଶ ସହିତ ଲକ୍ଷ୍ୟ କରି ରିପୋର୍ଟରେ କରିଛନ୍ତି···" ଏହା ତ ନୃତ୍ୟ ନୁହେଁ ; ଏହା ହେଲା ଯୌନିକ ମୈଥୁନର ସୂଚନାତ୍ମକ ଅଶ୍ଳୀଳ ବ୍ୟଞ୍ଜନା ।" ଅଥଚ ଆମର ଶିଷ୍ଟ ସମାଜପତିମାନେ ଏସବୁ ନିର୍ବିବାଦରେ ଗଳାଧଃକରଣ କରିଥାନ୍ତି "ବକ୍ସ-ଅଫିସ" ବା ଲୋକପ୍ରିୟତା ଦୃଷ୍ଟିରୁ । ବସ୍ତୁତଃ ଯେଉଁ ସମାଜର କପାଳରେ "ଲାଭଶୁଭ" ଏକ ଶିଳା ଲେଖ ପରି ଉତ୍‌କୀର୍ଣ୍ଣ, ସେ ସମାଜରେ ଏପରି ଦୃଶ୍ୟ ଅଶ୍ଳୀଳ ରୂପେ ବିବେଚିତ ହେବ କାହିଁକି ? ଓ କିପରି ? କାରଣ ଏହା ଲାଭପ୍ରଦ । ମାତ୍ର ଯେଉଁଠି ଗୋଟାଏ ଚୁମ୍ବନ ଅଥବା ଗୋଟାଏ ଉଲଗ୍ନ ଦେହ ସିନେମାର ପ୍ରଚ୍ଛଦପଟ ଉପରେ ଉଦ୍‌ଭାସିତ ହୋଇ ଉଠିଲେ "ସର୍ବନାଶ"ର ଆର୍ତ୍ତନାଦ !—କାରଣ ଆମର ଶଠତାପୂର୍ଣ୍ଣ ସମାଜ ବିରୁଦ୍ଧରେ ଏହା ଏକ ଉଲ୍ଲଙ୍ଗ ପ୍ରତିବାଦ । ସେଇଥିପାଇଁ ଏହା ଆମ୍ଭମାନଙ୍କର ଦୃଷ୍ଟିକଟୁ ହେବା ସ୍ୱାଭାବିକ ।

ଉଲ୍ଲଙ୍ଗତା ଏକ ପ୍ରତିବାଦ । ଇଂଲଣ୍ଡରେ ପ୍ରଥମ ରାଉଣ୍ଡଟେବଲ୍ କନ୍‌ଫରେନ୍‌ସ ବେଳେ (୧୯୩୧ ସାଲ), ବକିଙ୍ଗ୍‌ହାମ୍ ପାଲେସ୍‌ର ମହାରାଜକୀୟ ସମ୍ଭ୍ରାନ୍ତ ପରିବେଶରେ ଦିନେ ଅର୍ଦ୍ଧ-ଉଲ୍ଲଙ୍ଗ-ଫକୀର ବେଶୀ ଗାନ୍ଧିଙ୍କୁ ଦେଖି ସମ୍ରାଟ ପଞ୍ଚମ ଜର୍ଜ ଯେପରି ଖପ୍‌ପା ହୋଇ ଉଠିଥିଲେ, ତାହାର ବିବରଣୀ ଆମ୍ଭମାନଙ୍କର ଜାତୀୟ ସ୍ମୃତିରେ ଏକ ଉପକଥା ରେ ପରିଣତ ହୋଇଛି । ଆପାଦମସ୍ତକ ଶୋଷଣ ଓ ସମ୍ଭ୍ରାନ୍ତ୍ୟ ପୋଷାକ୍ଷ ଢଙ୍କା ଇଂରେଜ ଦରବାରୀ ଗୋଷ୍ଠୀ ଗାନ୍ଧୀଙ୍କର ଉଲ୍ଲଙ୍ଗ ପ୍ରତିବାଦ

ସାମ୍ନାରେ ସେଦିନ ଯେପରି ବିଚଳିତ ହୋଇ ଉଠିଥିଲା, ତାହା ପ୍ରକାଶ ପାଇଥିଲା ସ୍ୱୟଂ ସମ୍ରାଟ ପଞ୍ଚମ ଜର୍ଜଙ୍କ ବିସ୍ଫୋରଣରେ । ମର୍ଣ୍ଣିଂ-ଡ୍ରେସ୍ ନ ପିନ୍ଧି ସମ୍ରାଟଙ୍କ ସହିତ ସାକ୍ଷାତ କରିବା ପାଇଁ ବକିଙ୍ଗ୍‌ହାମ୍ ପାଲେସ୍‌କୁ ଅର୍ଦ୍ଧ-ଉଲ୍ଲଙ୍ଗ ଭାବରେ ଗାନ୍ଧିଜୀ ଆସିବା (ପୁଣି ସାମ୍ରାଜ୍ଞୀଙ୍କ ଉପସ୍ଥିତିରେ) ଏକ ଅଶ୍ଳୀଳ ଔଦ୍ଧତ୍ୟ—ଏକ ବେଆଦପୀ ବିଦ୍ରୋହ ଛଡ଼ା ଆଉ କ'ଣ ହୋଇପାରେ ? ଜଣେ ସମସାମୟିକ ଐତିହାସିକ ଲିପିବଦ୍ଧ କରିଛନ୍ତି—, ସମ୍ରାଟ ପଞ୍ଚମ ଜର୍ଜ ଗାନ୍ଧିଜୀଙ୍କୁ ଗୋଟାଏ କୋଣକୁ ଡାକି ନେଇ ବେଶ୍ କଡ଼ା ଗଳାରେ ଶୁଣାଇ ଦେଲେ···"ତୁମେ ମୋ ସରକାର ବିରୁଦ୍ଧରେ ଅସହଯୋଗ କଲେ ଫଳ କଣ ହେବ ଜାଣିଚ ? ମୋର ସୈନ୍ୟବାହିନୀ ଆଉ ପୁଲିସ ଲଗାଇ ତୁମକୁ ଠଣ୍ଡା କରିଦେବି ।"

ଗାନ୍ଧିଜୀ ସେଦିନ ସେଠାରୁ ଫେରି ରାଉଣ୍ଡ-ଟେବୁଲ କନ୍‌ଫରେ-ନ୍‌ସରେ ଭାଷଣ ପ୍ରସଙ୍ଗରେ ତାହାର ଉତ୍ତରରେ କହିଥିଲେ···"ଆଜି ସକାଳେ ଜଣେ ଇଂରେଜ ଭଦ୍ରଲୋକ ମୋତେ କହିଲେ—ପୁଲିସ ଆଉ ସୈନ୍ୟବାହିନୀ ଲଗାଇ ସେ ଆମକୁ ସାୟେସ୍ତା କରିଦେବେ । ମୁଁ କିନ୍ତୁ ତାଙ୍କୁ ଉତ୍ତରରେ କହିଲି ମୋ ଦେଶରେ ପିଲାଏ ତ ସେ ସବୁ ଗୋଳା-ବାରୁଦ ନେଇ ତାଳଫଟକା ପରି ଯଥେଷ୍ଟ ଖେଳୁଛନ୍ତି ।"

ଗାନ୍ଧିଜୀଙ୍କ ସମାଜ-ସଂସ୍କାରକ ରୂପଟି କେବଳ ଆମେ ଚହ୍ନୁଁଚୁ । ତାଙ୍କୁ ମହାତ୍ମା ଭାବରେ କେବଳ ଦେଖିଚୁ । ମାତ୍ର ତାହାର ନେପଥ୍ୟରେ ସେଇ ଅଶାନ୍ତ, ଉଲ୍ଲଙ୍ଗ ବିପ୍ଳବର ରୂପ, ଆଜି ସୁଦ୍ଧା ଆବିଷ୍କାରର ଅପେକ୍ଷା ରଖେ ।···ଉଲ୍ଲଙ୍ଗତାକୁ ଆମେ ଭୟ କରୁ । କାରଣ ଆମର ଖୋଳତା ଉପରେ ଏହା କାଳେ କାଳେ ଆଘାତ ହାଣିଚ ।

(କଳିଙ୍ଗ ୧୪-୯-୬୯)



# ଗୁରୁ ଅକ୍ଷର

ସେଦିନ କଟକଠାରେ ଜନତାର ବିକ୍ଷୋଭ ପ୍ରଦର୍ଶନରେ ଆହତ ଜଣୈକ ମନ୍ତ୍ରୀ "ଶାନ୍ତିରକ୍ଷା" ପାଇଁ ତାଙ୍କ ଦଳପକ୍ଷରୁ ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କରାଯିବାର ଘୋଷଣା ପ୍ରକାଶ କରିବା ଦିନୁ, ଭୁବନେଶ୍ୱରରେ ଶିକ୍ଷାମନ୍ତ୍ରୀଙ୍କ ବାସଭବନ ସମ୍ମୁଖରେ ଧାରଣାରତ ଶିକ୍ଷକଙ୍କଠାରୁ ବଲାଙ୍ଗୀର ରାଜେନ୍ଦ୍ର-ପାର୍କରେ ବିକ୍ଷୁବ୍ଧ ଛାତ୍ର ଓ ଜନତାଙ୍କ ଉପରେ ରିକ୍‌ସାବାଲାଙ୍କୁ ଲଗାଇ "ଶାନ୍ତିରକ୍ଷା"ର ଯେପରି ଏକାଧିକ ଅନୁଶୀଳନ ହୋଇଗଲାଣି ସେଥିରେ "ସ୍ୱେଚ୍ଛା ସେବକ ବାହିନୀ"ର ଅର୍ଥର ବ୍ୟୁତ୍ପତ୍ତି ମଧ୍ୟ ବେଶ୍ ସ୍ପଷ୍ଟ ହୋଇଗଲାଣି । ଏଠାରେ ଆକ୍ରମଣ ଅର୍ଥରେ "ଶାନ୍ତି" ଓ ଗୁଣ୍ଡା ଅର୍ଥରେ "ସ୍ୱେଚ୍ଛାସେବକ" ପରି ଦୁଇଟି ସମ୍ଭ୍ରାନ୍ତ ସାଧୁଶବ୍ଦ ଯେ ବ୍ୟବହାର କରାଯାଇଅଛି, କେବଳ ଦିବାନ୍ଧ ଅଥବା ଦଳାନ୍ଧମାନଙ୍କ ବ୍ୟତୀତ ଆଉ କାହାର ସେଥିରେ ସନ୍ଦେହ ନାହିଁ । ଶବ୍ଦର ଏପରି ପ୍ରୟୋଗରୀତି ଏଠାରେ ଆଲୋଚ୍ୟ ।

ଇଂରେଜୀରେ ଏହାକୁ କୁହାଯାଏ ଇଉଫେମିଜମ୍ (Euphemism) ···ଅର୍ଥାତ୍ ଗୋଟିଏ ମନ୍ଦ, ଅମଙ୍ଗଳ ଶବ୍ଦକୁ ମଙ୍ଗଳସୂଚକ ଶୁଭ୍ରବରଣରେ ପ୍ରବେଶ କରିବା । ଇଉଫେମିଜମ୍ ଗୋଟିଏ ଗ୍ରୀକ୍ ଶବ୍ଦରୁ ଉତ୍ପନ୍ନ, ଯାହାର ଅର୍ଥ··· "to use words of good Omen", ସେଇଥିପାଇଁ ଯୁଦ୍ଧଖୋର ଡିକ୍‌ଟେଟର୍‌ମାନେ ଯେତେବେଳେ "ଶାନ୍ତି"ର ଦୁଆ ଉଠାନ୍ତି, ତାହା ପ୍ରକୃତରେ ବୁଝାଏ ଯୁଦ୍ଧ ପାଇଁ ଆହ୍ୱାନ । "ସ୍ୱେଚ୍ଛାସେବକ"ମାନେ ସେହିପରି ବୁଝାନ୍ତି ନିର୍ଘାତ ଗୁଣ୍ଡା । ଏପରି "ଇଉଫେମିଜମ୍" ମନୁଷ୍ୟର ବୌଦ୍ଧିକ ଶଠତାର ଆଉ ଏକ ବିକୃତି । "୧୯୮୪"ର ପ୍ରସିଦ୍ଧ ଲେଖକ ଜର୍ଜ ଅରୱେଲ୍ ଏହାକୁ କହିଥିଲେ—"ଡବଲ୍‌ଟକ୍" ଯାହା "ଡବଲ୍-ଥିଙ୍କ୍"ର ଏକ ପରିଣତି ।

ଚଳନ୍ତି ଓଡ଼ିଆରେ ଏପରି "ଇଉଫେମିଜମ୍"ର ଏକାଧିକ ଉଦାହରଣ ଦିଆଯାଇପାରିବ । ଉଦାହରଣ ସ୍ୱରୂପ "ତାଙ୍କୁ ବେଶ୍ ଉତ୍ତମ ମଧ୍ୟମ" ମିଳିଲା । ଏଥିରୁ ବୁଝାଯିବ ତାଙ୍କୁ କିଛି ଗୋଟାଏ ସୁଫଳପ୍ରାପ୍ତି ଘଟିଲା ପରା ! ମାତ୍ର ଏହାର ପ୍ରକୃତ ଅର୍ଥ ହେଉଛି ତାଙ୍କ ପିଠିରେ ବାଧା ଚପେଟକ କେତେଟା ମୁଷ୍ଟିକ ପଡ଼ିଲା । ସେହିପରି "ତାଙ୍କୁ ଅର୍ଦ୍ଧଚନ୍ଦ୍ର ଦେଇ ବିଦା କର" । ଅନେକ ମନେ କରିପାରନ୍ତି ; ଶଂସିତ ବ୍ୟକ୍ତିଙ୍କୁ ଏଠାରେ ମଧ୍ୟଯୁଗୀୟ କାବ୍ୟନାୟିକାର ଅର୍ଦ୍ଧଚନ୍ଦ୍ରାକୃତି କପାଳସଦୃଶ କିଛି ମଙ୍ଗଳବସ୍ତୁ ପ୍ରାପ୍ତି ଘଟିଲା । କିନ୍ତୁ ପ୍ରକୃତରେ ସେ ପାଇଲେ ଗଳାଧକ୍କା । ସେହିପରି "ସିଏ ଚାଲିଗଲେ" ଶୁଣି କେହି ଯଦି ପଚାରେ "କୁଆଡ଼େ ?"— ତା ହେଲେ ସେପରି ପଚାରିବା ଲୋକଟି ଏକ ନିର୍ଘାତ ଅପୋଗଣ୍ଡ ବୋଲି ଚାଲି ଯାଇଥିବା ବ୍ୟକ୍ତିଙ୍କ ପରିବାରବର୍ଗ ମନେକରିବା ସ୍ୱାଭାବିକ । କାରଣ "ସିଏ ମରିଗଲେ" ନ କହି "ସିଏ ଚାଲିଗଲେ" ବୋଲି ଶ୍ମଶାନବୈରାଗ୍ୟରେ ମାନ୍ୟାର୍ଥରେ କୁହାଯାଇଥାଏ । କୌଣସି ନାୟିକାଙ୍କ ପ୍ରସଙ୍ଗରେ "ହରଣ" ଶବ୍ଦର ପ୍ରୟୋଗ ଘଟିଲେ ବୁଝିବା ପାଇଁ ହେବ ନାହିଁ ଯେ ନାୟିକା ଅଙ୍କ କଷୁଛନ୍ତି ବୋଲି । ନାୟିକା ସେତେବେଳେ ଏକ ଘୋର ଦୁରବସ୍ଥାର ସମ୍ମୁଖୀନ । ସେହିପରି ପୋଖରୀକୁ ଯାଇଥିବା ଲୋକଙ୍କୁ କୌଣସି ଜଳାଶୟରେ ଖୋଜିଲେ ସେ କଦାପି ସେଠାରେ ମିଳିବେ ନାହିଁ । ତାଲେ ପାଣି ହେଲେ ହିଁ ପୋଖରୀ ହୋଇଗଲା । ଇଂରାଜୀରେ ମଧ୍ୟ ସେ ବାଥ୍‌ରୁମ୍‌କୁ ଯାଉଛନ୍ତି ଶୁଣି ଆପଣ ଯଦି ବୁଝି ନିଅନ୍ତି ଯେ ଭଦ୍ର ଲୋକ ଅବେଳାରେ ଗାଧୋଉଛନ୍ତି ତାହାହେଲେ ଆପଣ ମହା ଭୁଲ୍ କରିବେ କିନ୍ତୁ !

/ ସଭ୍ୟତାର ଆରମ୍ଭରେ ମନୁଷ୍ୟ ଯଦି ବସ୍ତ୍ର ଉଦ୍‌ଭାବନ କରିଥିଲା ତାହାର ଦେହର ଉଲଙ୍ଗତାକୁ ଢାଙ୍କିବା ପାଇଁ, ମନର ଉଲଙ୍ଗତାକୁ ପ୍ରକାଶ କରିବା ପାଇଁ ସେ ସୃଷ୍ଟି କରିଥିଲା ଭାଷା । ମାତ୍ର ସଭ୍ୟତାର ଏହି ବିକୃତି ମଧ୍ୟରେ ବସ୍ତ୍ରର ପ୍ରୟୋଗ ଆଜି ମନୁଷ୍ୟର ଦେହର ଉଲଙ୍ଗତାକୁ ରେଖାଙ୍କିତ କରିବାପାଇଁ (ଉଦାହରଣ—ନଳପ୍ୟାଣ୍ଟ, ଟେଟେଲନ୍ ଶାଢ଼ୀ ଓ ସ୍ଲାକ୍) ସେହିପରି ମନୁଷ୍ୟର ଭାଷା ଆଜି ଅଧିକରୁ ଅଧିକ ବ୍ୟବହୃତ ହେଉଛି ତାର ଉଲଙ୍ଗ ଭାବନା ଓ ଚିନ୍ତା ଉପରେ ଗୋଟିଏ ଆବରଣୀ ପକାଇ

ତାହାକୁ ଢାଙ୍କି ଦେବାପାଇଁ । ଉଦାହରଣ ସ୍ୱରୂପ "ଲୋକେ ଦରିଦ୍ରତାରୁ ସୁଦ୍ଧା ହୀନ ଅବସ୍ଥାରେ ଅଛନ୍ତି"—ଏକଥା ସ୍ୱୀକାର କରିବାପାଇଁ ଆମର ଯୋଜନା-ନିର୍ମାତାମାନଙ୍କୁ ବାଧୁଛି । କାରଣ ସେପରି ଖୋଲ୍‌ଖୋଲ୍ ଭାଷାରେ କହିଦେଲେ ସେମାନଙ୍କର ଭେଳା ବୁଡ଼ିଯିବ । ସେଥିପାଇଁ କୁହାଯାଉଛି ; ଲୋକଙ୍କ ଅବସ୍ଥା "ସବ୍‌ଷ୍ଟାଣ୍ଡାର୍ଡ ଲିଭିଙ୍ଗ୍ !" ଆମର ସହର ଓ ମହାନଗରୀମାନଙ୍କରେ ବସ୍ତୀ ବା ସ୍ଲମ୍‌ସବୁ ଗଢ଼ି ଉଠୁଛି···ଏକଥା ସ୍ୱୀକାର କରିବାପାଇଁ ଆମ ବିବେକକୁ ବାଧେ । ସେଥିପାଇଁ କୁହାଯାଉଛି "ସାଂସ୍କୃତିକ ଦୃଷ୍ଟିରୁ ଅନଗ୍ରସର ପରିବେଶ"···Culturally deprived environment । ଭିଏତ୍‌ନାମ୍ ଯୁଦ୍ଧରେ ଗରିଲାମାନଙ୍କୁ ଯେତେବେଳେ ମାରି ଉଡ଼େଇ ଦେବାପାଇଁ ନିର୍ଦ୍ଦେଶ ଦିଆଯାଉଅଛି ସେତେବେଳେ ତାହାର ନାମକରଣ କରାଯାଉଅଛି···"ମୌଳିକ ଶାନ୍ତିରକ୍ଷା"··· Pacification of the enemy infrastructure । ଏହାର ଚୂଡ଼ାନ୍ତ ନିଦର୍ଶନ ଦେଇଥିଲେ ନାଜୀ ହିଟଲର ଇହୁଦୀ ସମସ୍ୟାର ଶେଷ ସମାଧାନ (final solution) ପାଇଁ । ତାଙ୍କ 'ସମାଧାନ'ର ପରିଣତି ହୋଇଥିଲା ଛଅ ନିୟୁତ ଇହୁଦୀଙ୍କ ହତ୍ୟା ।

ଏହାର ଇଉଫେମିଜମ୍ ମଧ୍ୟରେ ମନୁଷ୍ୟର ପ୍ରକାଶଭଙ୍ଗୀ କାରାରୁଦ୍ଧ ରହି ଭାଷା ଯେପରି କ୍ରମେ ଶଠତାପୂର୍ଣ୍ଣ ହୋଇ ଉଠିଲାଣି ପ୍ରକାଶୋନ୍ମୁଖ ଆବେଗ ଓ ଭାବନାସବୁ ସେହିପରି କ୍ରମେ ରୁଦ୍ଧଶ୍ୱାସ ହୋଇ ପଡ଼ିଲାଣି । ନିଜ ପ୍ରାଣର ନିଭୃତ ଆଲୋଡ଼ନ ଓ ଆବେଗକୁ ସତ୍ୟନିଷ୍ଠ ଭାବରେ ପ୍ରକାଶ କରିବା ପାଇଁ ଆଜି ଆବଶ୍ୟକ ପଡୁଛି, ଏପରି ଶବ୍ଦ, ଯାହା ହୁଏତ ଅଭିଧାନିକ ଅର୍ଥରେ ନାହିଁ, ଅଥବା ସେ ସବୁର ପ୍ରୟୋଗ ଶିଷ୍ଟ ସମାଜରେ ନିଷିଦ୍ଧ । ଏହି କାରଣରୁ ଇଂରାଜୀରେ ଆସୁଛି ଡି. ଏଚ. ଲରେନ୍‌ସୀୟ "ଚାରିଅକ୍ଷରିଆ ଶବ୍ଦ" (four letter word) ! ବସ୍ତୁତଃ ଇଂରାଜୀରେ ସେହି ଚାରିଅକ୍ଷରିଆ ଶବ୍ଦ ବ୍ୟତୀତ ଆଉ କେଉଁଥିରେ ବା ଦିଆଯାଇପାରିବ ଆଜିର ବୌଦ୍ଧିକ ଶଠତା ଓ ଆତ୍ମ ପ୍ରବଞ୍ଚନାର ଜବାବ ?

(କଳିଙ୍ଗ—୨୮-୯-୭୯)



# ମଡ଼ର୍ଣ୍ଣିଜିମ୍ ଓ ଏକ୍‌ସପେରିମେଣ୍ଟ୍

ସାହିତ୍ୟ ଉପରେ ବିଜ୍ଞାନ ଅଲକ୍ଷିତରେ ଯେଉଁ କେତେକ ଗଭୀର ପ୍ରଭାବ ପକାଇଛି, ତାହା କେତେକ ସାହିତ୍ୟିକ ପରିଭାଷାରେ ସୁସ୍ପଷ୍ଟ । ସେ ସବୁର ଉଦାହରଣ ହେଲା "ମଡ଼ର୍ଣ୍ଣ" "ଏକ୍‌ସପେରିମେଣ୍ଟାଲ" ଓ "ଟେକ୍‌ନିକ୍" ପ୍ରଭୃତି । ସାହିତ୍ୟ କ୍ଷେତ୍ରରେ ଏସବୁ ଶବ୍ଦ ବ୍ୟବହାର କଲାବେଳେ ଓ ତାହାର ମୋହରେ ଭାସିଯିବାବେଳେ ଆମ୍ଭେମାନେ ଏ ଶବ୍ଦଗୁଡ଼ିକର ପ୍ରକୃତ ଅର୍ଥ ଓ ତାତ୍ପର୍ଯ୍ୟରେ କିନ୍ତୁ ବିସ୍ମୃତ ହୋଇ ଯାଇଥାଉ ।

କାରଖାନାର ପ୍ଲାଣ୍ଟ ବା କଳକବଜାର ଆଧୁନିକୀକରଣ ବା "ମଡ଼ର୍ଣ୍ଣାଇଜେସନ" ଅର୍ଥରେ ମଡ଼ର୍ଣ୍ଣ ଶବ୍ଦଟି ବ୍ୟବହୃତ ହୋଇଥାଏ । ଏହି "ମଡ଼ର୍ଣ୍ଣ" ଶବ୍ଦକୁ କାରଖାନାର ମେନେଜର ଓ ଇଞ୍ଜିନିୟରମାନେ ପ୍ରଚୁର ପରିମାଣରେ ଖାତିର୍ କରିଥାନ୍ତି । ଯେଉଁ କାରଖାନାର ଯନ୍ତ୍ରପାତି ଯେତେ ବେଶୀ ମଡ଼ର୍ଣ୍ଣ, ତାହାର ଉତ୍ପାଦନ ପ୍ରକ୍ରିୟା ସେତେବେଶୀ ଲାଭପ୍ରଦ । "ମଡ଼ର୍ଣ୍ଣ"ର କନ୍‌ସେପ୍‌ଟ ବା ଭାବନା ତେଣୁ ପରିମାଣାତ୍ମକ, ଗୁଣାତ୍ମକ ଆଦୌ ନୁହେଁ । ଏହା ବହିରଙ୍ଗର ବ୍ୟାପାର । ଅନ୍ତରଙ୍ଗର ନୁହେଁ । ଗୁଣାତ୍ମକ ଦୃଷ୍ଟିରୁ ଏଥିରେ କୌଣସି ପ୍ରଭେଦ ପାର୍ଥକ୍ୟ ନାହିଁ । ଗୁଣାତ୍ମକ ଦୃଷ୍ଟିରେ ପାରମ୍ପରିକଠାରୁ, ମଡ଼ର୍ଣ୍ଣ କୌଣସି ଗୁଣରେ ସର୍ବଥା ସ୍ୱତନ୍ତ୍ର ନୁହେଁ । ଉଦାହରଣ ସ୍ୱରୂପ, ଚଳିତ ଶତାବ୍ଦୀର ଆରମ୍ଭରେ ସ୍ଥାପିତ ଜାମ୍‌ସେଦ୍‌ପୁର ଟାଟା କାରଖାନାରୁ ଇସ୍ପାତର ଉତ୍ପାଦନ "ଓପନ ହାର୍ଥ" ପଦ୍ଧତିରେ ହୋଇଥାଏ । କିନ୍ତୁ ସାଂପ୍ରତିକ ରାଉରକେଲା ଇସ୍ପାତ କାରଖାନାରେ ଉତ୍ପାଦନର ପଦ୍ଧତି ସମ୍ପୂର୍ଣ୍ଣ ଆଧୁନିକ ଏଲ୍. ଡ଼ି. ପ୍ରୋସେସ୍‌ରେ । କାରଖାନାର ଆଧୁନିକତା ଦୃଷ୍ଟିରୁ ଜାମସେଦପୁର କାରଖାନା ପ୍ରାଚୀନ ଓ ପାରମ୍ପରିକ—କିନ୍ତୁ ରାଉରକେଲାର ଉତ୍ପାଦନ ପଦ୍ଧତି ସମ୍ପୂର୍ଣ୍ଣ ଆଧୁନିକ ଓ ଔଜ୍ଜ୍ୱଲ୍ୟପୂର୍ଣ୍ଣ । ତଥାପି ଗୁଣାତ୍ମକ ଦୃଷ୍ଟିରୁ ରାଉରକେଲା କାରଖାନାରୁ ଉତ୍ପନ୍ନ ଇସ୍ପାତ ଜାମ୍‌ସେଦ୍‌ପୁର କାରଖାନାରୁ ଉତ୍ପନ୍ନ

ଇସ୍ପାତଠାରୁ କୌଣସି ଗୁଣରେ ଉନ୍ନତତର ନୁହେଁ । କଲକବଜାର ଆଧୁନିକତା ଦୃଷ୍ଟିରୁ କେବଳ ଜାମସେଦପୁର କାରଖାନାଠାରୁ ରାଉରକେଲା କାରଖାନାର ଏକ ଅଭିନବତ୍ୱ ରହିଛି । କିନ୍ତୁ ସାହିତ୍ୟ କେବଳ ଅଭିନବତ୍ୱର ପୁଞ୍ଜିରେ ଚଳେ ନାହିଁ । ସେଥିପାଇଁ କାଳିଦାସ, ସେକ୍ସପିୟର ; ଗେଟେ, ମାଲଆର୍ ପ୍ରମୁଖ ଧ୍ରୁପଦୀ କବି ଓ ନାଟ୍ୟକାର ଆଜି ସୁଦ୍ଧା ମଡ଼ର୍ଣ୍ଣମାନଙ୍କ ମଧ୍ୟରେ ମଡ଼ର୍ଣ୍ଣ ହୋଇ ରହିଛନ୍ତି ।

ସମସାମୟିକ ସାହିତ୍ୟ ସେହିପରି ଆଜି ଯେଉଁ ଦୁଇଟୋଟି ଶବ୍ଦଦ୍ୱାରା ନିତ୍ୟ ଅନୁଶାସିତ ତାହା ହେଲା "ଏକ୍ସପେରିମେଣ୍ଟ" ଓ "ଟେକ୍‌ନିକ"। ଏକ୍‌ସ୍‌ପେରିମେଣ୍ଟ ଶବ୍ଦଟି ଆସିଛି ମଧ୍ୟ ବୈଜ୍ଞାନିକର ଗବେଷଣାଗାରରୁ । ପ୍ରକୃତିର କୌଣସି ମୌଳିକ ସତ୍ୟର ଉଦ୍‌ଘାଟନ କରିବାପାଇଁ ବୈଜ୍ଞାନିକ ଧୀରବରେ ଓ ନିଭୃତରେ ବିଭିନ୍ନ ଏକ୍‌ସପେରିମେଣ୍ଟ ଚଳାଇଥାଏ । ଉକ୍ତ ଏକ୍‌ସପେରିମେଣ୍ଟରୁ ଅବଶେଷରେ ସେ ଏକ ଚରମ ସମାଧାନରେ ଉପନୀତ ହୋଇଥାଏ । ବୈଜ୍ଞାନିକର ଗବେଷଣାଗାରରେ ଏକ୍‌ସପେରିମେଣ୍ଟ ତେଣୁ ଲକ୍ଷ୍ୟ ନୁହେଁ—ତାହା କେବଳ ଏକ ପନ୍ଥା । କିନ୍ତୁ ଆମେ ଏହି ଏକସପେରିମେଣ୍ଟକୁ ଯେପରି ଗୋଟିଏ ଚରମ ଲକ୍ଷ୍ୟରେ ପରିଣତ କରିଦେଇଛୁ । ଫଳରେ ଏପରି ଏକ ଧାରଣାର ସୂତ୍ରପାତ ହେଲାଣି ଯେ ସାହିତ୍ୟରେ ଯାହା କିଛି ଏକ୍‌ସପେରି-ମେଣ୍ଟାଲ୍, ତାହାହିଁ ସତ୍ ଓ ପ୍ରଗତିଶୀଳ ସାହିତ୍ୟ ; ଅନ୍ୟସବୁ ବାଜେ । ଏହା କିନ୍ତୁ "ମଡ଼ର୍ଣ୍ଣିଟି" ପରି ଆଂଶିକଭାବରେ ସତ୍ୟ । ସମ୍ପୂର୍ଣ୍ଣତଃ ନୁହେଁ । କେତେକ ନୂତନ ଅନୁଭୂତି, ପରିସ୍ଥିତି, ସଙ୍କଟ ଓ ସଂଘାତର ପରିବେଷଣ ପାଇଁ ପାରମ୍ପରିକ ଗଠନ ବିନ୍ୟାସ ଅପୂର୍ଣ୍ଣ ମନେ ହୋଇଥାଏ । ସେଥିପାଇଁ ଆଙ୍ଗିକ ଯେନି ନୂତନ ଏକ୍‌ସପେରିମେଣ୍ଟର କେତେକ ପ୍ରୟୋଜନ ମଧ୍ୟ ପଡ଼ିଥାଏ ; ଏପରି ଏକ୍‌ସପେରିମେଣ୍ଟ ଅଭିନନ୍ଦନୀୟ ! ଚେତନା ପ୍ରବାହ ବା "ଷ୍ଟ୍ରିମ୍ ଅଫ କନ୍‌ସସ୍‌ନେସ୍" ଶୈଳୀ ଏହିପରି ଧାରାରେ ଆମର ଗଦ୍ୟ ସାହିତ୍ୟକୁ ଆସିଛି । ଆବସର୍ଡ଼ ଡ୍ରାମା ଏହିପରି ଭାବରେ ଆମର ରଙ୍ଗମଞ୍ଚକୁ ଆସିବାର ଉଦ୍ୟମ କରିଛି ଆମର. ଫିଲ୍‌ମରେ "ନଉ-ଓ୍ୱେଭ୍" ଆନ୍ଦୋଳନମାନେ ଏହି ସୂତ୍ରରେ ଆମଦାନି କରୁଅଛୁ । ଏସବୁ ନୂତନ ଏକ୍‌ସ-ପେରିମେଣ୍ଟ ବିଭିନ୍ନ କଳା ସୃଷ୍ଟିକୁ ବହୁଳାଂଶରେ ଉଜ୍ଜୀବିତ କରୁଅଛି

ସତ୍ୟ, ମାତ୍ର ଗୁଣାତ୍ମକ ଦୃଷ୍ଟିରୁ ଏହା ଯେ ସର୍ବଥା ଉନ୍ନତତର ସୋପାନ ସୃଷ୍ଟି କରୁଅଛି, ତାହା ସର୍ବଥା କୁହାଯାଇ ନ ପାରେ । ତେଣୁ ଆଙ୍ଗିକ ଯେନ କେବଳ ଏକ୍ସପେରିମେଣ୍ଟ ଉପରେ ଗୁରୁତ୍ୱ ଆରୋପ କରି ଆତ୍ମିକ ଦିଗଟିକୁ ଭୁଲିଗଲେ ସାମ୍ପ୍ରତିକ ସାହିତ୍ୟର ଗୁଣାତ୍ମକ ବିକାଶ ବାଧାଗ୍ରସ୍ତ ହେବ ।

ଟେକ୍‌ନିକ ସବୁକାଳେ ସବୁ ସାହିତ୍ୟରେ ରହିଥାଏ । ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଏହି ଟେକ୍‌ନିକ୍ ଯେନି ବହୁ ଚର୍ଚ୍ଚା ହୋଇଅଛି । ସଂସ୍କୃତ ଅଳଙ୍କାର-ଶାସ୍ତ୍ରର ରୀତି ଓ ଧ୍ୱନି ପ୍ରଭୃତିର ପରିକଳ୍ପନା ଏହି ଟେକ୍‌ନିକ୍‌ର ଭାବନା ଦ୍ୱାରା ପ୍ରଭାବିତ । ମାତ୍ର ସର୍ବଶେଷରେ ଏକଥା କୁହାଯାଇଛି, ଗୁଣ ମଧ୍ୟରେ ହିଁ କେବଳ କାବ୍ୟ-ପ୍ରଭା ପ୍ରସାରିତ ହୋଇଥାଏ । ଆଳଙ୍କାରିକ ବାମନ ଶେଷକୁ କହିଛନ୍ତି ରୀତି ହେଲା ଗୁଣ ।

ତେଣୁ କେବଳ ଏକ୍ସପେରିମେଣ୍ଟ ଟେକ୍‌ନିକ୍ ଓ ମଡ଼ର୍ଣ୍ଣିଜିମ୍‌ର ମୋହରେ ସାହିତ୍ୟର ଅନ୍ତର୍ନିହିତ ଗୁଣ ପ୍ରତି ବିସ୍ମୃତ ରହିଲେ ସାମ୍ପ୍ରତିକ ସାହିତ୍ୟର ଗୁଣାତ୍ମକ ଅଭିବୃଦ୍ଧି ବାଧାଗ୍ରସ୍ତ ହୋଇ ପଡ଼ିବ ।

(କଳିଙ୍ଗ—୧୨-୧୦-୬୯)



# ନେତି...ନେତି

## (ସାମୁଏଲ ବେକଟଙ୍କ ଉଦ୍ଦେଶ୍ୟରେ)

୧୯୬୯ ସାଲର ସାହିତ୍ୟ ପାଇଁ, ନୋବେଲ୍ ପୁରସ୍କାର ମିଳିଲା, ଆଇରିସ୍ ନାଟ୍ୟକାର ବେକଟ୍‌ଙ୍କୁ । ବେକଟ୍‌ଙ୍କର ସାହିତ୍ୟିକ କୃତି ସହିତ ପରିଚିତ ହେବା ପାଇଁ ସୁଯୋଗ ଏ ପର୍ଯ୍ୟନ୍ତ ଅବଶ୍ୟ ଆସି ନାହିଁ । ୧୯୬୭ ସାଲର ନୋବେଲ ପୁରସ୍କାର ବିଜେତା ଗୁଆଟାମେଲାର ଔପନ୍ୟାସିକ ମିଜୁଏଲ୍ ଆଞ୍ଜେଲ୍ ଆଷ୍ଟୁରିଆସ୍‌ଙ୍କ ଉପନ୍ୟାସ ସୁଦ୍ଧା ଏ ପର୍ଯ୍ୟନ୍ତ ଭାରତରେ ସୁପରିଚିତ ହୋଇପାରିଲା ନାହିଁ । ବୈଦେଶିକ ବିନିମୟ ମୁଦ୍ରାର ଅଭାବ ଓ ତଜ୍ଜନିତ କଠୋର ନିୟନ୍ତ୍ରଣ ପୁଣି ଦୁର୍ମୂଲ୍ୟତା ଫଳରେ ସମସାମୟିକ ପାଶ୍ଚାତ୍ୟ ଲେଖକମାନଙ୍କର ପ୍ରସିଦ୍ଧ ରଚନାବଳୀ ଦୁଷ୍ପ୍ରାପ୍ୟ ହେଉଥିବା ଏହାର କାରଣ ।

ପ୍ୟାରିସ୍, ଲଣ୍ଡନ, ଓ୍ୱାଶିଂଟନ, ନ୍ୟୁୟର୍କ ଅଥବା ମସ୍କୋ ପରି ସାଂସ୍କୃତିକ କେନ୍ଦ୍ର ଓ ସୁସମୃଦ୍ଧ ଦେଶମାନଙ୍କ ବ୍ୟତୀତ ଅନ୍ୟତ୍ର ଯେ ସତ୍-ସାହିତ୍ୟ ଉଧାଏ ନାହିଁ—ଆଷ୍ଟୁରିଆସ୍‌ଙ୍କ ପରେ ବେକେଟ୍ ତାହାକୁ ଆଉ ଥରେ ଅପ୍ରମାଣିତ କରି ଅଛନ୍ତି । ଆଷ୍ଟୁରିଆସ୍ ଅଖ୍ୟାତ, ଅଜ୍ଞାତ ଗୁଆଟାମେଲାର ଅଧିବାସୀ । ବେକେଟ ଆୟାର୍ଲଣ୍ଡର ଲେଖକ । ମାତ୍ର ଆଷ୍ଟୁରିଆସ୍ ଲେଖିଥିଲେ ସ୍ପାନିସ୍ ଭାଷାରେ । ବେକେଟ୍‌ଙ୍କ ସାହିତ୍ୟ କୃତି ସବୁ ଇଂରାଜୀ ଓ ଫରାସୀ ଭାଷାରେ ରଚିତ ହୋଇ ନଥିଲେ, ବିଶ୍ୱର ବିଦଗ୍ଧମଣ୍ଡଳୀଙ୍କ ଠାରୁ ସେସବୁ ହୁଏତ କାଳକାଳ ପାଇଁ ଅପରିଚିତ ରହିଯାଇ ଥାଆନ୍ତା । ବେକେଟ୍ ମାତୃଭାଷା ଆଇରିସ୍‌ରେ ଲେଖିଥିଲେ, ହୁଏତ ନୋବେଲ ପୁରସ୍କାରର ସ୍ୱୀକୃତି ପାଇପାରି ନଥାନ୍ତେ । ଫରାସୀ ଓ ଇଂରାଜୀ ବିଶ୍ୱ ସାହିତ୍ୟର ମର୍ଯ୍ୟାଦା ପାଇ ଥିବାରୁ, ବିଶ୍ୱ ସ୍ୱୀକୃତି ପାଇଁ ଏଥି ମଧ୍ୟରୁ ଯେ କୌଣସି ଗୋଟିଏ ଭାଷାରେ ଅନ୍ୟ ଭାଷାର ସାହିତ୍ୟ ଅନୂଦିତ ହେବା ଆବଶ୍ୟକ । ଭାରତୀୟ ଭାଷା ସାହିତ୍ୟ ବିଶେଷତଃ ଓଡ଼ିଆ ସାହିତ୍ୟ ଏହି

କାରଣରୁ ବିଶ୍ୱର ବିଦଗ୍‌ଧମଣ୍ଡଳୀର ଦୃଷ୍ଟି ତଥାପି ଆକର୍ଷଣ କରିପାରିଲା ନାହିଁ । ପ୍ରତ୍ୟେକ ଭାଷା ସାହିତ୍ୟରେ ତେଣୁ ଏକ ଶକ୍ତିଶାଳୀ ଅନୁବାଦକ ଗୋଷ୍ଠୀ ନ ବାହାରିବା ପର୍ଯ୍ୟନ୍ତ, ଭାରତୀୟ ଭାଷା ସାହିତ୍ୟ, ନିଜ ନିଜର ସଂକୀର୍ଣ୍ଣ ପ୍ରାନ୍ତୀୟ ସୀମା ମଧ୍ୟରେ ଆବଦ୍ଧ ହୋଇ ରହିଥିବ ।

କିନ୍ତୁ ସାମୁଏଲ ବେକେଟ୍ ଇତି ମଧ୍ୟରେ କୁଆଡ଼େ ନୋବେଲ ପୁରସ୍କାର ଗ୍ରହଣ କରିବା ପାଇଁ ପ୍ରକାରାନ୍ତରେ ଅସମ୍ମତି ଜ୍ଞାପନ କରି ଅଛନ୍ତି । ଅବ-ଶେଷରେ ବେକେଟ୍ ଯଦି ଏହା ପ୍ରତ୍ୟାଖ୍ୟାନ କରନ୍ତି, ତା'ହେଲେ ବର୍ଣ୍ଣାଡ୍‌ଶ ଓ ସାର୍ତ୍ରେଙ୍କ ପରେ ସେ ହେବେ ନୋବେଲ ପୁରସ୍କାର ପ୍ରତ୍ୟାଖ୍ୟାନ କରିଥିବା ତୃତୀୟ ଲେଖକ । ବର୍ଣ୍ଣାଡ୍‌ଶ ନୋବେଲ ପୁରସ୍କାର ଗ୍ରହଣ କରିବା ପାଇଁ ମନା କରି ଦେଇଥିଲେ ପ୍ରଚଣ୍ଡ ଅଭିମାନ ଓ ତାଚ୍ଛଲ୍ୟରେ । ୧୯୨୫ ସାଲରେ ନୋବେଲ ପୁରସ୍କାର ପ୍ରତ୍ୟାଖ୍ୟାନ କରି, ରଏଲ୍ ସ୍ୱେଡ଼ିସ୍ ଆକାଡେମୀର ସମ୍ପାଦକଙ୍କୁ ବର୍ଣ୍ଣାଡ୍‌ଶ ଲେଖିଥିଲେ···The money is·a lifebelt thrown to a swimmer who has already reached the shore in safety." (କୂଳରେ ପହଞ୍ଚି ସାରିଥିବା ଲୋକଆଡ଼େ ଦଉଡ଼ି ଫିଙ୍ଗିବାର ଏ ନୋବେଲ ପୁରସ୍କାରର ଅର୍ଥ ନିରର୍ଥକ ।)

ଶ' ସେତେବେଳକୁ ସାହିତ୍ୟ ରଚନାରୁ ପ୍ରଭୂତ ଅର୍ଥର ଅଧିକାରୀ ହୋଇ ସାରିଥିଲେ । ସମ୍ମାନ ବି ମିଳିଥିଲା ପ୍ରଚୁର । ନୋବେଲ ପୁରସ୍କାରର ସମ୍ମାନର ତେଣୁ ତାଙ୍କ ନିକଟରେ କୌଣସି ଆକର୍ଷଣ ନଥିଲା, କିମ୍ବା ପୁରସ୍କାର ଲବ୍‌ଧ ଅର୍ଥ ପାଇଁ ମଧ୍ୟ କୌଣସି ପ୍ରଲୋଭନ ନ ଥିଲା । ସାର୍ତ୍ରେ କିନ୍ତୁ ନୋବେଲ ପୁରସ୍କାର ପ୍ରତ୍ୟାଖ୍ୟାନ କରିଥିଲେ ଭିନ୍ନ କାରଣରୁ । ନୋବେଲ ପୁରସ୍କାର ବିଜେତାର ବିଜ୍ଞାପନ ଉପରେ ସେ ପରିଚିତ ହେବାକୁ ଚାହିଁ ନ ଥିଲେ । ଏବେ ସତକୁ ସତ ବେକେଟ୍ ଯଦି ନୋବେଲ ପୁରସ୍କାର ପ୍ରତ୍ୟାଖ୍ୟାନ କରନ୍ତି, ତା'ହେଲେ ତାହାର କାରଣ ହୁଏତ ହେବ, ସେ ଏ ସବୁରେ ବିଶ୍ୱାସ କରନ୍ତି ନାହିଁ । ତାଙ୍କ ସାହିତ୍ୟର ମର୍ମକଥା ହେଲା—"ରିଜେକ୍‌ସନ୍" (Rejection), ନେତି···ନେତି । "ଏ ନୁହେଁ", "ଏ ନୁହେଁ" । ଏପରି ଜୀବନ ଦର୍ଶନ ସହିତ ନୋବେଲ ପୁରସ୍କାର ପରି ଗୋଟାଏ ନିଦା ଚଉଖୁଣ୍ଟିଆ ବ୍ୟାପାରର ନିଶ୍ଚୟ ମୌଳିକ ଗର୍‌ମିଲ୍ ରହିଅଛି ।

ବେକେଟ୍ ତାଙ୍କର ଜଣେ ପ୍ରିୟ ଚିତ୍ରଶିଳ୍ପୀଙ୍କର ଗୋଟିଏ ଚିତ୍ର ସମ୍ପର୍କରେ ଯାହା ଲେଖିଲେ, ସେଥିରୁ ବେକେଟ୍‌ଙ୍କ ସାହିତ୍ୟର ଅନ୍ତର୍ନିହିତ ବାଣୀର ସମ୍ୟକ ପରିଚୟ ମିଳିବ। ବେକେଟ୍ ଏହି ଚିତ୍ର ସମ୍ପର୍କରେ ଲେଖିଥିଲେ···There is nothing to express, nothing with which to express, no desire to express together with the obligation to express. (ପ୍ରକାଶ ପାଇଁ କୌଣସି ବିଷୟବସ୍ତୁ ନାହିଁ କି ସେଥିପାଇଁ କୌଣସି ସାଧନ ମଧ୍ୟ ନାହିଁ। ପ୍ରକାଶ ପାଇଁ ପ୍ରବୃତ୍ତି ନାହିଁ କି ସେଥିପାଇଁ କୌଣସି ଦାୟିତ୍ୱ ମଧ୍ୟ ନାହିଁ।) ସମାଲୋଚକମାନେ କହନ୍ତି, ଆଜିର ଆଧ୍ୟାତ୍ମିକ ନିଃସଙ୍ଗତା, ଶୂନ୍ୟତା ଓ ବୌଦ୍ଧିକ ପ୍ରତ୍ୟାଖ୍ୟାନ ବା 'ରିଜେକ୍‌ସନ୍' ହେଲା ବେକେଟଙ୍କର ସାହିତ୍ୟର ମୂଳ କଥା। ରୟାଲ୍-ସ୍ୱିଡିଶ୍-ଏକାଡେମୀ ପରି ଏକ ପରମ୍ପରାବଦ୍ଧ, ମାନ୍ଧାତାଧର୍ମୀ ସଂସ୍ଥା ବେକେଟଙ୍କୁ ସ୍ୱୀକୃତି ଦେବା ମଧ୍ୟରେ ପ୍ରଚ୍ଛନ୍ନ ରହିଛି, ଆଜି ଏହି ଶୂନ୍ୟବାଦୀ, ନେତିବାଦୀ ଜୀବନ-ଦର୍ଶନର କ୍ରମବର୍ଦ୍ଧିଷ୍ଣୁ ବ୍ୟାପକତା। ନ୍ୟୁ ଲେଫ୍ଟ (New Left) ରାଜନୀତିଠାରୁ ସାମ୍ପ୍ରତିକ ସାହିତ୍ୟ ଚିତ୍ରକଳା, ନାଟକ ଓ ସଙ୍ଗୀତ ପର୍ଯ୍ୟନ୍ତ ସବୁଠି ଆଜି ଏଇ ରିଜେକ୍‌ସନ୍।

ଏ ରିଜେକ୍‌ସନ୍‌ଟା ଯେ ଗୋଟାଏ ଅଭୂତପୂର୍ବ ନୂଆ ଅଭିଜ୍ଞତା ତାହା ମଧ୍ୟ ନୁହେଁ। ଊନବିଂଶ ଶତାବ୍ଦୀର ସୋଭିଏତ୍ ଋଷିଆର ବିପ୍ଳବୀମାନେ ଏହିପରି ଥିଲେ ନେତିବାଦୀ। କୌଣସି ପ୍ରକାର ଚାଲିପକା ସଂସ୍କାର ପ୍ରତି ସେମାନଙ୍କର ପ୍ରତ୍ୟୟ ନଥିଲା। ସେମାନଙ୍କୁ କୁହାଯାଉଥିଲା 'ନିହିଲିଷ୍ଟ' (Nihilist)। ଆଜିର ରିଜେକ୍‌ସନ ଊନବିଂଶ ଶତାବ୍ଦୀର ସେହି 'ନିହିଲିଜିମ୍' ଠାରୁ ସ୍ୱତନ୍ତ୍ର ନୁହେଁ। ପୁଣି ଉପନିଷଦ୍ ଯୁଗର "ନେତି ନେତି" ପରି ଏହା ମଧ୍ୟ ଆଜି ପୁରାତନ। କିନ୍ତୁ "ନେତି ନେତି" ମଧ୍ୟରେ ଥାଏ "ଇତି"ର ଗଭୀର ଉପଲବ୍ଧି ଓ ବ୍ୟାକୁଳ ଅନ୍ୱେଷଣ। ସେପରି ଉପଲବ୍ଧି ନ ଥିଲେ ଅନ୍ୱେଷଣ ଯେପରି ପଣ୍ଡଶ୍ରମ ହୋଇଥାଏ "ନେତି ନେତି" ମଧ୍ୟ ସେହିପରି ହୋଇଥାଏ ଏକ ଆର୍ତ୍ତନାଦ। ଊନବିଂଶ ଶତାବ୍ଦୀର "ନିହିଲିଜିମ୍" ମଧ୍ୟରୁ ଆସିଥିଲା "ସୋସିଆଲିଷ୍ଟ ରିଆଲିଜିମ୍"। ବିଂଶ ଶତାବ୍ଦୀର ଏ ରିଜେକ୍‌ସନ ମଧ୍ୟରୁ କ'ଣ ଜନ୍ମ ନେବ, ତାହାହିଁ ଆଜିର ଆଧ୍ୟାତ୍ମିକ, ବୌଦ୍ଧିକ ଓ ସାହିତ୍ୟିକ ସମସ୍ୟା।

✲✲ (କଳିଙ୍ଗ ତା ୨-୧୧-୬୯)

# ସାହିତ୍ୟର ଭବିଷ୍ୟତ

ଆଜିର ଜୀବନରେ ସାହିତ୍ୟର ପ୍ରଭାବ ଓ ପ୍ରେରଣାର ଅଭାବ ପ୍ରତ୍ୟେକ ସୃଷ୍ଟିଧର୍ମୀ, ସଚେତନ ସାହିତ୍ୟିକଙ୍କୁ ସାହିତ୍ୟର ଭବିଷ୍ୟତ ସମ୍ପର୍କରେ ସନ୍ଦିଗ୍ଧ କରି ଦେଇଅଛି । ସମାଜରେ ସାହିତ୍ୟର ଭୂମିକା ନାହିଁ ବା ସମାଜ ପ୍ରତି ସାହିତ୍ୟର ଏକ ଦାୟିତ୍ୱ ନାହିଁ—ଏପରି କହିବା ଯେପରି ବେଆଦବୀ ହେବ; ସେହିପରି ମଧ୍ୟ ହେବ ଅନ୍‌ଫ୍ୟାସନେବଲ ! କିନ୍ତୁ ସାଂପ୍ରତିକ ପରିସ୍ଥିତିରୁ ଏହିପରି ଏକ ଅଭିଜ୍ଞତା ଜନ୍ମିଥାଏ ।

ସେଦିନ ସମ୍ବାଦରେ ପ୍ରକାଶ ପାଇଥିଲା, ପଶ୍ଚିମ ଜର୍ମାନୀର ଲେଖକକୁଳ ବର୍ତ୍ତମାନ ଲେଖକର ନିଭୃତ "ଗଜଦନ୍ତ ମିନାର" ଛାଡ଼ି ଓହ୍ଲାଇଛନ୍ତି, ଏକ୍‌ସଟ୍ରା ପାର୍ଲିଆମେଣ୍ଟାରୀ ପଲିଟିକ୍‌ସର ରାଜପଥରେ । ଏ ଅଭିମୁଖ୍ୟକୁ ଆମେ ଯେତେ ସମାଲୋଚନା କରୁ ନା କାହିଁକି, ଏହା ଯେ ସମାଜଧର୍ମୀ ସାହିତ୍ୟର ଏକ ସ୍ୱାଭାବିକ ପରିଣତି ସେଥିରେ ସନ୍ଦେହ ନାହିଁ । ସମାଜ ପ୍ରତି ସାହିତ୍ୟର ଯଦି ଏକ ସୁନିର୍ଦ୍ଦିଷ୍ଟ ଦାୟିତ୍ୱ ରହିଛି ; ସାହିତ୍ୟିକର ଯଦି ଗୋଟାଏ "ସୋସିଆଲ୍ କମିଟ୍‌ମେଣ୍ଟ" ବା ସାମାଜିକ ସଂକଳ୍ପ ରହିବା ଆବଶ୍ୟକ, ତା'ହେଲେ ସାହିତ୍ୟ ରଚନା ପରିବର୍ତ୍ତେ ତାହା ତ ରାଜନୈତିକ କର୍ମଯୋଜନା ମଧ୍ୟରେ ସଫଳ ହୋଇପାରିବ ବେଶୀ । ଉପନ୍ୟାସ, କବିତା ନାଟକ ଅଥବା ପ୍ରବନ୍ଧ ଲେଖି, ଆଜି ରୁଷୋ, ଭଲ୍‌ଟାୟାର ଟଲଷ୍ଟୟଙ୍କ ପରି ଗୋଟିଏ ବିପ୍ଳବ ଠିଆ କରିବାର ଦିନ ନାହିଁ । ରସ୍‌କିନ୍‌ଙ୍କର "Unto the Last", ଥୁରୋଙ୍କର "ସିଭିଲ୍ ଡିସ୍‌ଓବିଡ଼ିୟେନ୍‌ସ ଓ ଟଲଷ୍ଟୟଙ୍କ "The Kingdom of God is within you" ଏଇ ତିନିଖଣ୍ଡ ପୁସ୍ତକ ପଢ଼ି ଗାନ୍ଧିଜୀଙ୍କ ଜୀବନରେ ଭାବାନ୍ତର ଓ ରୂପାନ୍ତର ଘଟିଥିଲା । ଦକ୍ଷିଣ ଆଫ୍ରିକାର ସୌଖୀନ ସୌଭାଗ୍ୟବନ୍ତ ବାରିଷ୍ଟର ଗାନ୍ଧୀ ବାରିଷ୍ଟରୀ ବ୍ୟବସାୟ ଛାଡ଼ି "ଟଲଷ୍ଟୟ ଫାର୍ମ"ରେ ଶ୍ରମଜୀବୀ ଶ୍ରମିକରେ ନିଜକୁ ପରିଣତ କରିଥିଲେ । ବିଗତ ଶତାବ୍ଦୀରେ "ଅଙ୍କଲ୍ ଟମ୍‌ସ

କାବନ” ଉପନ୍ୟାସ ଆମେରିକାରେ କ୍ରୀତଦାସ ପ୍ରଥା ବିରୁଦ୍ଧରେ ଗୃହଯୁଦ୍ଧର ସୂତ୍ରପାତ କରିଥିଲା । ଗାନ୍ଧିଜୀଙ୍କ “ହୋମରୁଲ” ପୁସ୍ତକ ଭାରତର ବୌଦ୍ଧିକ ଜଗତରେ ଏକ ପ୍ରବଳ ମନ୍ଥନ ସୃଷ୍ଟି କରି, ଶତ ଶତ ପଦ୍ମଭୂଷଣ ବୁଦ୍ଧିଜୀବୀଙ୍କୁ ସଂଗ୍ରାମର ରାଜପଥକୁ ଓହ୍ଲାଇ ଆଣିଥିଲା । ସାହିତ୍ୟର ଇତିହାସରେ ଏହିପରି ଅଗଣିତ ଉଦାହରଣ ରହିଅଛି । କିନ୍ତୁ ଆଜିର ପରିସ୍ଥିତିରେ ସେପରି ଗୋଟିଏ ଉଦାହରଣ ଖୋଜି ବସିଲେ ହତାଶ ହେବାପାଇଁ ପଡ଼ିବ ।

ଆଜି ମଧ୍ୟ ପୃଥିବୀର ବିଭିନ୍ନ ଭାଷାରେ ବିଭିନ୍ନ ପୁସ୍ତକ ରଚିତ ହେଉଅଛି । ଆଜି ମଧ୍ୟ ଚିନ୍ତାଶୀଳ ଲେଖକଗୋଷ୍ଠୀ ସାହିତ୍ୟ କର୍ମରେ ନିୟୋଜିତ ଅଛନ୍ତି । ତଥାପି ସମାଜ ଉପରେ ସାହିତ୍ୟର ସେପରି ସୁଦୂରପ୍ରସାରୀ ପ୍ରଭାବ ପଡ଼ି ପାରୁନାହିଁ କାହିଁକି ? ସାହିତ୍ୟ ଆଜି “ମାସ୍ ମେଡ଼ିଆ”ରେ ପରିଣତ ହୋଇ କେବଳ ମନୋରଞ୍ଜନଧର୍ମୀ ହୋଇପଡ଼ୁଛି କାହିଁକି ? ଏ ଯୁଗଟା କେବଳ କ୍ରମେ “ଅନ୍-ଲିଟରାରୀ” ବା ଅସାହିତ୍ୟିକ ହୋଇ ପଡ଼ୁଛି କାହିଁକି ? ସୃଷ୍ଟିଧର୍ମୀ ସାହିତ୍ୟିକମାନେ ଏ ଜିଜ୍ଞାସାର ସମାଧାନ ନ ଦେବା ପର୍ଯ୍ୟନ୍ତ ଗଳିତ ଦଶକ ସାହିତ୍ୟ ସୃଷ୍ଟି ଦିଗରୁ ଯେ ଖୁବ୍ ଉଲ୍ଲେଖଯୋଗ୍ୟ ହେବ, ସେପରି ମନେ ହୁଏ ନାହିଁ ।

ସାହିତ୍ୟ ଆରମ୍ଭରେ ଥିଲା ଏକ ଟ୍ରାଇବାଲ୍ ବା ଆଦିମ ଗୋଷ୍ଠୀବଦ୍ଧ ସମାଜର ସୃଷ୍ଟି । ଏ ସମାଜରେ ‘ଅକ୍ଷର’ ଥିଲା ସନାତନ । ‘ଅକ୍ଷର’ ଥିଲା ଏକ ଐନ୍ଦ୍ରଜାଲିକ ଶକ୍ତି । ବେଦରେ ବୋଧହୁଏ ଏହି କାରଣରୁ ‘ଇନ୍ଦ୍ର’ଙ୍କୁ ଜୀବରୂପେ ଅଭିହିତ କରାଯାଇଛି । ଯାହା କିଛି ଅକ୍ଷରରେ ଲିପିବଦ୍ଧ ହେଉଥିଲା, ତାହା ଥିଲା ଶାଶ୍ୱତ ଓ ସନାତନ । ସେଥିପାଇଁ ଏକ ସମୟରେ ଲିପିବଦ୍ଧ ଶାସ୍ତ୍ର, ଦେବତା ଜ୍ଞାନରେ ପୂଜା ପୂଜିତ ହେଉଥିଲା । ଖ୍ରୀଷ୍ଟିୟାନମାନଙ୍କର ପରମ ପୂଜନୀୟ ଗ୍ରନ୍ଥ ‘ବାଇବେଲ୍’ର ଅର୍ଥ ହେଲା ପୁସ୍ତକ । ଗ୍ରନ୍ଥସୂଚୀ ବା ଗ୍ରନ୍ଥର ଇତିହାସ ଅର୍ଥରେ ‘ବିବ୍ଲିଓଗ୍ରାଫୀ’ ଶବ୍ଦଟି ଏହି ମୂଳ ‘ବାଇବେଲ୍’ ଶବ୍ଦରୁ ଉତ୍ପନ୍ନ । ସେହିପରି ଶିଖମାନଙ୍କର ପରମ ପୂଜନୀୟ ବସ୍ତୁର ନାମ—‘ଗ୍ରନ୍ଥ ସାହେବ’ । ହିନ୍ଦୁମାନଙ୍କର ପୁରାଣ ଓ ଶାସ୍ତ୍ର ଏ ସମ୍ପର୍କରେ ଉଲ୍ଲେଖ ନ କଲେ ମଧ୍ୟ ଚଳିବ । ଅକ୍ଷରରେ ଲିପିବଦ୍ଧ ବାକ୍ୟ ବା ବାଣୀ ଆଦିମ-ସମାଜରେ ଐନ୍ଦ୍ରଜାଲିକଗୁଣ ସମନ୍ୱିତ ଥିବାରୁ ସେପରି ସମାଜରେ ସାହିତ୍ୟର ସୁଦୂରପ୍ରସାରୀ ପ୍ରଭାବ

ରହିଥିଲା । ମାତ୍ର ବିଗତ ଦଶକ ଠାରୁ ଆମ୍ଭମାନଙ୍କର ଅଲକ୍ଷିତରେ ସେ ସମାଜ ବଦଳିଯାଇଛି । ଆଜିର ସମାଜ ପ୍ରବଳ ଭାବରେ "ଇନ୍‌ଡ଼ିଭିଜୁଆଲିଷ୍ଟିକ୍" ବା ବ୍ୟକ୍ତିତନ୍ତ୍ରବାଦୀ । ଏ ସମାଜରେ ପ୍ରତ୍ୟେକେ ଗୋଟିଏ ଗୋଟିଏ ସମାଜ । ସେଥିପାଇଁ ପ୍ରତ୍ୟେକ ବ୍ୟକ୍ତିବିଶେଷର ଅଭିରୁଚି ଓ ଅଭିଳାଷ ହେଲା, ଆଜିର ଏକମାତ୍ର ଅନୁଶାସନ । ତା ଉପରେ ସମଷ୍ଟି ବା ସମାଜର କୌଣସି ନିୟନ୍ତ୍ରଣ ନାହିଁ । ଆଜିର ସମାଜ ତେଣୁ "ସ୍ୱୈର ସମାଜ" ବା "ପରମିସିଭ୍ ସୋସାଇଟି"ରେ ପରିଣତ ହୋଇଛି । ଏ ସମାଜରେ ସବୁ ଚଳେ । ଅଧାଲଙ୍ଗଳା ହୋଇ ବୁଲିବାଠାରୁ ଆରମ୍ଭ କରି "ମାରିଜୁଆନା"ଟାଣି "ସାଇକାଡେଲିକ" ଅଭିଜ୍ଞତା ଆହରଣ କରିବା ପର୍ଯ୍ୟନ୍ତ ।

ଏ ସମାଜରେ ଆଜି ତେଣୁ ପ୍ରତ୍ୟେକେ ମଧ୍ୟ ଜଣେ ଜଣେ ଲେଖକ । ଯେଉଁ ସାହିତ୍ୟ ଏକଦା ଥିଲା ମୁଷ୍ଟିମେୟ ବାଣୀସାଧକଙ୍କ ନିଭୃତ ସାଧନାପୀଠ, ତାହା ଆଜି ବହୁ ଭାଷା, ବହୁ କଣ୍ଠ ଓ ବହୁ ମେଜାଜ୍‌ର ଏକ ସୁବିସ୍ତୃତ ରାଜପଥ । ବର୍ଷକୁ ବର୍ଷ ରେଫ୍ରିଜରେଟର ବା ମୋଟରଗାଡ଼ିର ମଡ଼େଲ୍ ବଦଳିବା ପରି ଆଜିର ସାହିତ୍ୟ କାଲିକୁ ପୁରୁଣା । ଆଜିର ପ୍ରସାଧନ ଶୈଳୀ କାଲିକୁ ବଦଳିଯିବା ପରି ଆଜିର ସାହିତ୍ୟ ଶୈଳୀ ମଧ୍ୟ କାଲିକୁ ଅଚଳ ହୋଇଯାଉଛି । ପୁଣି ରାଜନୀତି କ୍ଷେତ୍ରରୁ ସୁଦ୍ଧା 'ଗୁରୁ'ବାଦ ଓ 'ନେତା'ତନ୍ତ୍ର 'ବସିଜମ୍' (Bossism) ନାମରେ ନିନ୍ଦିତ ଉତ୍ସର୍ଜିତ ହୋଇ ବିଦାୟ ନେଇ ଯାଉଥିବାବେଳେ ସାହିତ୍ୟିକ ତାର ଆଦର୍ଶ, ତାର ସ୍ୱପ୍ନ ଓ ତାର ବାଣୀକୁ କାହା ଉପରେ ବା ଲଦିବ କେଉଁ ଅହଙ୍କାରରେ ? ଏ ପରିସ୍ଥିତିରେ ତେଣୁ ପ୍ରତ୍ୟେକ ସୃଷ୍ଟିଧର୍ମୀ ସାହିତ୍ୟିକ, ସାମାଜିକ ସଙ୍କଳ୍ପ ପରିବର୍ତ୍ତେ ଯୌନତା ଓ ବିକୃତିକୁ ଯେ ତାର ସାହିତ୍ୟର ଉପଜୀବ୍ୟରେ ପରିଣତ କରୁଛି ସେଥିରେ ତେଣୁ ବିସ୍ମିତ ହେବାର କିଛି ନାହିଁ । ସାହିତ୍ୟ ହିଁନେ ଏ ସଙ୍କଟ ନିଶ୍ଚୟ ଅତିକ୍ରମ କରିବ । କିନ୍ତୁ କେବେ ଓ କିପରି, ଆଜିର ଶତ ବିଭ୍ରାନ୍ତି ଓ ଅନିଶ୍ଚିତତା ମଧ୍ୟରେ ତାହା ଏକ ଉତ୍ପୀଡ଼କ ଜିଜ୍ଞାସା ।

(କଳିଙ୍ଗ, ୪-୧-୭୦)



# ଅମୃତ ମନ୍ଥନ

ବ୍ରହ୍ମପୁରରୁ ଜଣେ ତରୁଣ ଲେଖକ ଲେଖିଛନ୍ତି···"ଆପଣଙ୍କର 'ସାହିତ୍ୟ ଓ ସମାଜ' ଗତ ଥର ଦେଖିବାକୁ ପାଇନି । ···ସାହିତ୍ୟ ଓ ସମାଜ ପାଇଁ ବିଷୟ ନିର୍ବାଚନ କରିବା ଏକ ଦୁଃସାଧ୍ୟ ବ୍ୟାପାର । ତେଣୁ ଆପଣ ମଝିରେ ମଝିରେ ସେ ସ୍ତମ୍ଭ ବନ୍ଦ କରୁଛନ୍ତି···ଆସନ୍ତାଥର ମୁଁ ଅନୁରୋଧ କରୁଛି ଆପଣ (ସାହିତ୍ୟ ଓ ସାମାଜ) ସ୍ତମ୍ଭରେ 'ଯୁବଲେଖକ ତାର ମୂଲ୍ୟାୟନ ଓ ଧର୍ମ, ସମ୍ପ୍ରତିକ ସାମାଜିକ, ରାଜନୈତିକ, ସାଂସ୍କୃତିକ ପୃଷ୍ଠ ଭୂମିରେ କ'ଣ ହେବା ଉଚିତ ଲେଖିବେ । ···ଯୁବ ସାହିତ୍ୟ ନୂତନ ପୀଢ଼ୀ ର ଆହ୍ୱାନ ! ଆଜି ସମସ୍ତିଙ୍କୁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡିବ ଯେ, ଯେଉଁ ରିଜେକ୍‌ସନ୍ ବିସଙ୍ଗତି, ସନ୍ତ୍ରସ୍ତ ମାନସିକ , ତ୍ରିଶଙ୍କୁ ଅବସ୍ଥା ମଧ୍ୟରେ ସାମାଜିକ ଜୀବନ ଏକ ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତି ଦେଇ ଗତି କରୁଛି, ତାର ପ୍ରକୃତ ପ୍ରତିଛବି ସାହିତ୍ୟ ଯଦି ବହନ କରେ, ତେବେ ସେହି ସାହିତ୍ୟହିଁ ଆଦରଣୀୟ ହୋଇ ପାରିବ । କେବଳ କାହାଣୀ ଭଳି ଗଳ୍ପ ଓ ସେହି ସ୍ୱରଚିତ ଛନ୍ଦ, ନିୟମ କାନୁନ ସଂଲଗ୍ନ କବିତା ଯାହାକି ଆଜି ଅନେକ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଉଛି ତାହା ସୃଷ୍ଟି କରି ଆଗେଇ ଆସୁଥିବା ଏକ ବିପ୍ଳବାତ୍ମକ ଯୁଗର ଆତ୍ମଦହନକୁ ସନ୍ତୁଷ୍ଟ କରିଯାଇ ନ ପାରେ । ସାମାଜିକ ବାସ୍ତବିକତା (Social Realism) ର ଦୋହାଇ ଦେଇ, ପଙ୍ଗୁଭଳି, ଅଥର୍ବଭଳି, ସାହିତ୍ୟ ରଚନା କରିବାର ମୂଲ୍ୟ ନାହିଁ, ପଦ୍ମଶ୍ରୀ, ଏକାଡେମୀ ପୁରସ୍କାର ଲାଳସାରେ ; ବରଂ ଆତ୍ମାର ପ୍ରକୃତ ସ୍ୱରକୁ ସାହିତ୍ୟରେ ଅନୁଧ୍ୟାନ କରିଯାଉ । ବାସ୍ତବିକତା କୌଣସି ଅମୂର୍ତ୍ତ ଅଥବା ବସ୍ତୁବାଦୀ ସତ୍ତା ନୁହେଁ । ଏହା ମନୁଷ୍ୟର ପ୍ରତିଦିନର ସଂଘର୍ଷ ଓ ପ୍ରତିଯୋଗିତା । ତେଣୁ ଯୁବସାହିତ୍ୟ କହି ପ୍ରୌଢ଼ମାନେ ନାକ ଟେକିବା ଆଦୌ ଉଚିତ ହେବ ନାହିଁ । ଏହା ବୟସର ସୀମା ନିର୍ଦ୍ଧାରଣ କରେ ନାହିଁ, ବରଂ ପ୍ରଗତିଶୀଳ ଚିନ୍ତାର ବାହକରୂପେ ଆବାଳ ବୃଦ୍ଧ-

ବନତାର ସାହିତ୍ୟକୁ ବହନ କରି ଗ୍ଭଲେ । ଏ ସମ୍ପର୍କରେ ଆପଣଙ୍କର ମତାମତ କଳଙ୍ଗରେ ଦେଖିବା ଉତ୍କଣ୍ଠାରେ ରହିଲ ।"

× × ×

ମାନସିକ ଦ୍ୱନ୍ଦ କଣ କେବଳ ଏଇ ଯୁଗର ? ଗୋଟିଏ ଅଭୂତପୂର୍ବ ଅଭିଜ୍ଞତା ? ମୋର ମନେହୁଏ ଦ୍ୱନ୍ଦ କେବଳ ଏ ଯୁଗରେ ନୁହେଁ । ଗ୍ରୀକ୍ ସୋଫିଷ୍ଟ, ଭାରତୀୟ ଅଜୀବକ, ମଧ୍ୟଯୁଗୀୟ ଚର୍ଯ୍ୟା-ପଦାବଳୀର କବିକୁଳ, ପୁଣି ୟୁରୋପରେ ସେମାନଙ୍କର ସମସାମୟିକ 'ତ୍ରୁବାଦୁର' 'ଗ୍ୟଗୋସ' ଗୋଷ୍ଠୀ ଓ ଅଷ୍ଟାଦଶ-ଊନବିଂଶ ଶତାବ୍ଦୀର ରୋମାଣ୍ଟିକମାନେ ମଧ୍ୟ ଠିକ ଆଜିର "ଡ୍ରପ ଆଉଟ" "ଆଉଟ୍‌ସାଇଡ଼ର" ଓ "ଆଲଏନେଟେଡ୍"ମାନଙ୍କ ପରି ଯୁଗ ମାନସରେ ଏକ ପ୍ରବଳ ଦ୍ୱନ୍ଦ୍ୱର ଧାରକ ଓ ବାହକ ଥିଲେ ! ଦ୍ୱନ୍ଦ ଚିରନ୍ତନ ! ମାତ୍ର ପାର୍ଥକ୍ୟଟା ହେଉଛି ସେମାନେ ପ୍ରତ୍ୟେକେ ସେମାନଙ୍କ ଯୁଗର ସାହିତ୍ୟ ଓ ଦର୍ଶନରେ ଏକ ଉଲ୍ଲେଖଯୋଗ୍ୟ ପ୍ରଭାବ ବିସ୍ତାର କରିପାରିଥିଲେ । ସେମାନଙ୍କର ବିଭିନ୍ନ କୃତି ଓ ରଚନାଦ୍ୱାରା ସାହିତ୍ୟ ନାନା ଭାବରେ ସମୃଦ୍ଧ ହୋଇ ପାରିଥିଲା । ଆଜିର ଯୁବଲେଖକ ଦ୍ୱନ୍ଦ୍ୱର ସେହି ଯୁଗ ଯନ୍ତ୍ରଣାକୁ ଚିହ୍ନିଲେ କେବଳ ଯଥେଷ୍ଟ ହେବନାହିଁ । ସାହିତ୍ୟରେ ତାକୁ ସଫଳଭାବରେ ରୂପାୟିତ କରିବାକୁ ପଡ଼ିବ । ସେଥିପାଇଁ ଆବଶ୍ୟକ ସାଧନାନିଷ୍ଠ ସଂକଳ୍ପ ! ଯୁବ ଲେଖକର ପ୍ରଥମ 'କମିଟ୍ ମେଣ୍ଟ' ହେବା ଆବଶ୍ୟକ—ଲେଖିବା ପ୍ରତି ; ନିଜର ସିଦ୍ଧାନ୍ତ ପ୍ରତି !

କାଳଚକ୍ରର ଘୂର୍ଣ୍ଣି ମଧ୍ୟରେ ଆଜି କୌଣସି ଶାସ୍ତ୍ର, କୌଣସି ସଂଘ; କୌଣସି ଗୁରୁ ଅଭ୍ରାନ୍ତ ଓ ସ୍ୱୟଂସିଦ୍ଧ ହୋଇ ଆଉ ରହିପାରୁ ନାହାନ୍ତି । ପୁରୁଣା (ଫର୍ମ) ଗତାନୁଗତିକ ଆଙ୍ଗିକ, ଅମୃତ ଅଥବା ବିଷ-ମନ୍ଥନର ଏ ଜ୍ୱାଳା ବହନ କରିବା ପାଇଁ ଆଜି ଅସମର୍ଥ ହୋଇ ପଡ଼ୁଛି ! ତାହାକୁ ପ୍ରକାଶ କରିବା ପାଇଁ ପାରମ୍ପରିକ ଭାଷାଶୈଳୀ ମଧ୍ୟ ପର୍ଯ୍ୟାପ୍ତ ନୁହେଁ । ପାରମ୍ପରିକ ଆଙ୍ଗିକ ଓ ଭାଷାଶୈଳୀ ତାହାର ଚରମ ସୀମା ସ୍ପର୍ଶ କରିସାରିଲାଣି ! ଏହାକୁ ଅତିକ୍ରମ କରି ଏକ ନୂତନ ଦିଗ୍‌ବଳୟ ଉଦ୍‌ଘାଟନ ପାଇଁ ଯୁବଲେଖକ ଆଜି ବ୍ୟାକୁଳ ହୋଇ ଉଠିବା ସ୍ୱାଭାବିକ ।

ସାହିତ୍ୟର ଇତିହାସରେ ଏ ବ୍ୟାକୁଳତା ମଧ୍ୟ ନୂତନ ନୁହେଁ ।

ଚଳିତ ଶତାବ୍ଦୀ ଆରମ୍ଭରେ, ଭଞ୍ଜ-ଯୁଗର ଅଚଳାୟତନ ମଧ୍ୟରେ, ନୂତନ ଲେଖକ ଗୋଷ୍ଠୀ ମଧ୍ୟ ଠିକ୍ ଆଜିର ଯୁବଲେଖକମାନଙ୍କ ପରି ରୁଦ୍ଧଶ୍ୱାସ ହୋଇ ଉଠିଥିଲେ । ମାତ୍ର ସେମାନଙ୍କର ସେ ଅତୃପ୍ତି ଓ ଉଦ୍‌ବେଳନ ମଧ୍ୟରୁ ଜନ୍ମଲାଭ କରିଥିଲା ଏକ ପରିଚ୍ଛନ୍ନ ନୂତନ ଆଙ୍ଗିକ ଓ ଭାଷାଶୈଳୀ ! ମାତ୍ର ତାହା ସମ୍ଭବ ହୋଇପାରିଥିଲା—ସାହିତ୍ୟ ପ୍ରତି ସେମାନଙ୍କର ସେଇ ନିଷ୍ଠା ଓ ସଂକଳ୍ପ ମଧ୍ୟରେ ! ଲେଖିବା ପ୍ରତି ଆଜିର ଲେଖକର ସେପରି ସଂକଳ୍ପ ଅଛି କି ? ଏହାର ଉତ୍ତର କଥାରେ ନୁହେଁ, କାର୍ଯ୍ୟରେ, ଭାଷଣରେ ନୁହେଁ ; ରଚନାରେ ହିଁ ପ୍ରକାଶ ପାଇବା ଆବଶ୍ୟକ ।

ଭବିଷ୍ୟତ୍ ଯୁବ-ସାହିତ୍ୟର ମୂଲ୍ୟାଙ୍କନ ପାଇଁ ମୋ ପାଖରେ ଉପାଦାନ ନାହିଁ ; କିମ୍ବା ତାହା ମଧ୍ୟ ମୋର ଅଭିପ୍ରେତ ନୁହେଁ । କିନ୍ତୁ ଆନ୍ତର୍ଜାତିକ ଯୁବ-ସାହିତ୍ୟ ଆମର ସାମ୍ପ୍ରତିକ ସ୍ଥିତି ସମ୍ପର୍କରେ ଏକ ନୂତନ ଅଭିଜ୍ଞତା ଉନ୍ମୋଚିତ କରିଥିଲେ ହେଁ, ଏହା କୌଣସି ଉଲ୍ଲେଖଯୋଗ୍ୟ ସାହିତ୍ୟ ସୃଷ୍ଟି କରିପାରି ନାହିଁ 'ବୀଟ୍ ଜେନେରେସନ୍ ଆଣ୍ଡ ଦି ଆଙ୍ଗ୍ରୀ ୟଙ୍ଗମେନ'ର ଭୂମିକାରେ ସେମାନଙ୍କ ସାହିତ୍ୟର ମୂଲ୍ୟାୟନ କରି, ଜିନ ଗେର୍‌ଷ୍ଟମ୍ୟାନ ଓ ମାର୍କସ ଗାର୍‌ଟେନବର୍ଗ ଲେଖିଛନ୍ତି—

"Though the Beat Generation and the Angry Young men have yet to produce a major literature they most assuredly have created a significant one, bringing to our awareness certain essential truths about existence…"

ଭାରତର ଆଙ୍ଗ୍ରୀ ଓ ହଙ୍ଗ୍ରୀ, ଯୁବ ଓ ବୃଦ୍ଧ ଗୋଷ୍ଠୀର ଲେଖକମାନଙ୍କ ସମ୍ପର୍କରେ ଏହି ଉକ୍ତି ମଧ୍ୟ ପ୍ରଯୋଜ୍ୟ । ସେମାନେ ଏକ ନୂତନ ଉପଲବ୍ଧି ସୃଷ୍ଟି କରିବାରେ ସଫଳ ହୋଇପାରିଛନ୍ତି; ଏକ ନୂତନ ଚେତନା ଓ ଯନ୍ତ୍ରଣା ସମ୍ପର୍କରେ ମଧ୍ୟ ଆମ୍ଭମାନଙ୍କୁ ସଚେତନ କରାଇ ପାରିଛନ୍ତି ! ମାତ୍ର ବଳିଷ୍ଠ ଓ ସ୍ମରଣୀୟ ସାହିତ୍ୟ କର୍ମ ମଧ୍ୟରେ ଏସବୁ ପ୍ରତିମୂର୍ତ୍ତି ହୋଇ ନ ପାରିଲେ, ଆତ୍ମାର ସବୁ ଅଶାନ୍ତ ଆହ୍ୱାନ, କେବଳ ଆର୍ତ୍ତନାଦ ପରି ଶୁଭିବ ।



(କଳିଙ୍ଗ—୨୨-୩-୭୦)



4—

# ପୁସ୍ତକ-ପ୍ରସାର ପକ୍ଷ

ପହିଲା ଅପ୍ରେଲ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିବସରୁ କେତେକ ତରୁଣ ଲେଖକଙ୍କ ଉଦ୍ୟମରେ, ଓଡ଼ିଶାରେ 'ପୁସ୍ତକ-ପ୍ରସାର ପକ୍ଷ' ପାଳନ କରାଯାଉଅଛି । 'ପ୍ରସାର ପକ୍ଷ'ର ଉଦ୍ୟୋକ୍ତାଙ୍କ ଚିଠିରୁ ଜଣାପଡ଼େ, ଜୟପୁର ଓ ବ୍ରହ୍ମପୁର ପ୍ରଭୃତି ସହରମାନଙ୍କରେ ପ୍ରସାର କାର୍ଯ୍ୟକ୍ରମ ବେଶ ଆଶାଜନକ ଭାବରେ ଚାଲିଛି । ଓଡ଼ିଆ ସାହିତ୍ୟ କଟକ ସହରର ବାଲୁବଜାର ଠାରୁ ବାଙ୍କାବଜାର ମଧ୍ୟରେ ଆବଦ୍ଧ ରହିବାର ବହୁ ରୁଦ୍ଧଶ୍ୱାସ ଗ୍ଲାନି ପରେ ଗଞ୍ଜାମ ଓ କୋରାପୁଟ ଆଡ଼କୁ ପକ୍ଷ ମେଲିଥିବା ଓଡ଼ିଆ ସାହିତ୍ୟ ପକ୍ଷରେ କମ ସ୍ୱାସ୍ଥ୍ୟକର ହେବ ନାହିଁ । ସେପଟେ ରାଉରକେଲା ବେଲ୍ଟ୍‌ରେ ଯେଉଁସବୁ ଶିଳ୍ପନଗରୀ ଗଢ଼ି ଉଠୁଛି ସେଠାରେ ଓଡ଼ିଆ ସାହିତ୍ୟ କହିଲେ ଅଣଓଡ଼ିଆମାନେ ଭଞ୍ଜ ସାହିତ୍ୟକୁ ହିଁ ବୁଝିଥାଆନ୍ତି । ଭଞ୍ଜ ଜୟନ୍ତୀ ଯେମିତି ସମାରୋହରେ ସେସବୁ ଅଞ୍ଚଳରେ ପାଳିତ ହୁଏ, ସେଥିରୁ ଅଣଓଡ଼ିଆମାନେ ଓଡ଼ିଆ ସାହିତ୍ୟ କହିଲେ, ଅଷ୍ଟାଦଶ ଶତାବ୍ଦୀର ଭଞ୍ଜ ସାହିତ୍ୟକୁ ବୁଝିବା, ଅସ୍ୱାଭାବିକ ନୁହେଁ । ମାତ୍ର ଓଡ଼ିଶାରେ ଯେ ଗୋଟିଏ ସମୃଦ୍ଧ ଆଧୁନିକ ସାହିତ୍ୟ ରହିଛି ଏ ଧାରଣା ସେ ଅଞ୍ଚଳରେ ମିଳିବା କଠିନ । ବହି ଦୋକାନ କ୍ଲବ ଓ ଲାଇବ୍ରେରୀମାନଙ୍କରେ ଯେତେ ସଂଖ୍ୟାରେ ବଙ୍ଗଳା ହିନ୍ଦି ଓ ଅନ୍ୟଭାଷାର ପୁସ୍ତକମାନ ମିଳେ, ଓଡ଼ିଆ ଭାଷାର ପୁସ୍ତକ କିମ୍ବା ପତ୍ରିକା ତାହା ତୁଳନାରେ ଅତି ନଗଣ୍ୟ ! ସେଥି-ପାଇଁ 'ପ୍ରସାର ପକ୍ଷ' ଉଦ୍ୟୋକ୍ତାମାନେ ଏସବୁ ଅଞ୍ଚଳ ଆଡ଼େ ଥରେ ମଧ୍ୟ ପକ୍ଷ ମେଲିବା ଆବଶ୍ୟକ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିବସଠାରୁ ଓଡ଼ିଆ ପୁସ୍ତକ ପ୍ରସାର ପକ୍ଷ ଆରମ୍ଭ ହୋଇଥିବା ବେଶ ସୂଚନାଗର୍ଭିତ । ଓଡ଼ିଆଭାଷା ଓ ସାହିତ୍ୟରକ୍ଷା ଆନ୍ଦୋଳନ ମଧ୍ୟରୁ ଓଡ଼ିଶାରେ ଊନବିଂଶ ଶତାବ୍ଦୀର ନବ

ଜାଗରଣର ସୂତ୍ରପାତ ହୋଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଥିଲା, ତାର କ୍ରମ ପରିଣତି । ଓଡ଼ିଆର ଐତିହ୍ୟବୋଧ, ସ୍ୱାଭିମାନ ଓ ସ୍ୱାଧିକାର, ସେଦିନ ଓଡ଼ିଆ-ସାହିତ୍ୟ ରକ୍ଷା ଆନ୍ଦୋଳନ ମଧ୍ୟରେ କେବଳ ଯେ ଉଜ୍ଜୀବିତ ହୋଇଥିଲା ତାହା ନୁହେଁ, ଆତ୍ମ ପ୍ରତିଷ୍ଠା ପାଇଁ ଓଡ଼ିଆମାନଙ୍କ ପକ୍ଷରେ ଏହା ହୋଇଥିଲା ପ୍ରେରଣାର ଏକ ଉତ୍ସ ! ଓଡ଼ିଶାରେ ନବ-ଜାଗରଣର ଦ୍ୱିତୀୟ ପର୍ଯ୍ୟାୟରେ ତରୁଣ ଲେଖକ ଗୋଷ୍ଠୀଙ୍କ ଉଦ୍ୟମରେ ଯେଉଁ ପୁସ୍ତକ ପ୍ରସାର ପକ୍ଷ ପାଳିତ ହେଉଅଛି ତାହାର ସଫଳତାର ମୂଲ୍ୟାୟନ ଯାହାହେଉ ପଛେ, ଓଡ଼ିଆ ସାହିତ୍ୟ ସମ୍ପର୍କରେ ଏହା ଯେ ଏକ ସଚେତନତା ସୃଷ୍ଟି କରିବ ଓ ସାହିତ୍ୟର କ୍ରାନ୍ତିକାରୀ ଭୂମିକା ପ୍ରତି ଜନ-ସାଧାରଣଙ୍କୁ ସଚେତନ କରିବ ସେଥିରେ ସନ୍ଦେହ ନାହିଁ ।

କିନ୍ତୁ ଓଡ଼ିଆ ସାହିତ୍ୟକୁ ଆଜ ଓଡ଼ିଶା ମଧ୍ୟରେ ପ୍ରସାର ବା ପ୍ରଚାର କରିବାର ପ୍ରୟୋଜନ କାହିଁକି ପଡ଼ୁଛି ଏ ପ୍ରଶ୍ନ ମଧ୍ୟ କେହି କେହି ପଚାରି ପାରନ୍ତି । ଓଡ଼ିଆ ସାହିତ୍ୟ ଯେତେବେଳେ ପୋଥିଖେଦା ମଧ୍ୟରେ ବନ୍ଧା ପଡ଼ିଥିଲା, ସେତେବେଳେ ଏହାର ବ୍ୟାପ୍ତି ଥିଲା ଆନ୍ତଃପ୍ରାଦେଶିକ ! ୧୬୬୮ ଖ୍ରୀ: ଅ: ରେ ସନାତନ ଚକ୍ରବର୍ତ୍ତୀ ବଙ୍ଗଳା ଭାଷାରେ 'ଭାଗବତ' ରଚନା କଲାବେଳେ ଜଗନ୍ନାଥ ଦାସଙ୍କ ଭାଗବତ ଦ୍ୱାରା ଯେପରି ପ୍ରଭାବିତ ହୋଇଥିଲେ ସେ ତାହାର ପ୍ରମାଣ ନିଜ ରଚନାରେ ଲିପିବଦ୍ଧ କରି ଯାଇଛନ୍ତି...

"ଦଶମେର ଶେଷଖଣ୍ଡ ଭାଷା
ନ ପାଇଲ
ଅନେକତ ପଣ୍ଡି ଗ୍ରାମେ ଗ୍ରାମେ
ବେଡ଼ାଇଲ !
ଏ ହେତୁ ଉତ୍କଳ ଭାଷା କରିଲ
ଲିଖନ
ଜଗନ୍ନାଥ ଦାସ କୃତ ଅପୂର୍ବ
ବର୍ଣ୍ଣନ ।"

ଅର୍ଥାତ ସେତେବେଳେ ବଙ୍ଗ ଦେଶରେ ଜଗନ୍ନାଥ ଦାସଙ୍କ ଭାଗବତ

ଗ୍ରାମେ ଗ୍ରାମେ ଏପରି ସୁପରିଚିତ ଥିଲା ଯେ ବଙ୍ଗୀୟ ଭାଗବତକାର 'ବଙ୍ଗଳା' ଭାଷାରେ ଉତ୍କଳ ଭାଷା ମିଶାଇ ଦଶମସ୍କନ୍ଧ ରଚନା କରିଥିଲେ । ସାରଳାଙ୍କ ମହାଭାରତ ଏକଦା ବଙ୍ଗ ଦେଶରେ ଯେପରି ସୁପରିଚିତ ଥିଲା, ତାହାର ପ୍ରମାଣ ରଖିଯାଇଛନ୍ତି, ବଙ୍ଗୀୟ ପଣ୍ଡିତ ବିଜୟଚନ୍ଦ୍ର ମଜୁମଦାର ।

ମୁଦ୍ରାଯନ୍ତ୍ର ନଥିବା ଯୁଗରେ ଯଦି ଓଡ଼ିଆ ସାହିତ୍ୟର ଏପରି ପ୍ରସାର ଥିଲା, ଆଜି ମୁଦ୍ରଣ ଶିଳ୍ପ ଓ ପୁସ୍ତକ ବ୍ୟବସାୟର ଏହି ପ୍ରବର୍ଦ୍ଧମାନ କାଳରେ ଓଡ଼ିଶା ଭିତରେ ସୁଦ୍ଧା ଓଡ଼ିଆ ସାହିତ୍ୟର ପ୍ରସାର ପାଇଁ ପ୍ରସାରପକ୍ଷ ପାଳନ କରାଯାଉଛି କାହିଁକି ? ଓଡ଼ିଆ ଲେଖକମାନଙ୍କୁ ଏହାର କାରଣ ମଧ୍ୟ ନିର୍ଣ୍ଣୟ କରିବା ପାଇଁ ପଡ଼ିବ । ଭାରତୀୟ ମଧ୍ୟଯୁଗରେ ଓଡ଼ିଶାର ଲେଖକମାନେ ଥିଲେ ସାମାଜିକ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଆନ୍ଦୋଳନର ପୁରୋଭାଗରେ । ସେଥିପାଇଁ ସେମାନଙ୍କ ସାହିତ୍ୟରେ ମଧ୍ୟ ଥିଲା ଏକ ଆନ୍ତଃପ୍ରାଦେଶିକ ବ୍ୟାପ୍ତି । ଆଧୁନିକ ଓଡ଼ିଆ ସାହିତ୍ୟର ଲେଖକ-ମାନଙ୍କୁ ସେହିପରି ଯୁଗଚେତନାର ଧାରକ, ବାହକ ଓ ପ୍ରବର୍ତ୍ତକ ହେବାକୁ ପଡ଼ିବ । ତାହେଲେ ଓଡ଼ିଆ ସାହିତ୍ୟର ପ୍ରଚାର ପାଇଁ 'ପ୍ରସାର ପକ୍ଷ' ପାଳନର ପ୍ରୟୋଜନ ପଡ଼ିବ ନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟପରି ଅନ୍ୟ ଭାରତୀୟ ଭାଷା ସାହିତ୍ୟମାନଙ୍କୁ ମଧ୍ୟ ପ୍ରଭାବିତ କରିପାରିବ । କିନ୍ତୁ ଏଥିପାଇଁ ଓଡ଼ିଶାର ଜନସମାଜ ଏକ ଅନୁକୂଳ ପରିସ୍ଥିତି ସୃଷ୍ଟି କରିବା ଆବଶ୍ୟକ । ବସ୍ତୁତଃ ଓଡ଼ିଆ ଲେଖକ-ମାନେ ଯେପରି ଆର୍ଥିକ ପ୍ରତିଦାନ, ସାମାଜିକ ସ୍ୱୀକୃତି ଓ ସାଂସାରିକ ସୌଭାଗ୍ୟର କୌଣସି ପ୍ରତ୍ୟାଶା ନରଖି ଭାରତୀୟ ବାଙ୍ମୟରେ ଓଡ଼ିଆ ସାହିତ୍ୟକୁ ବଞ୍ଚାଇ ରଖି ପାରିଛନ୍ତି ବିଶ୍ୱସାହିତ୍ୟର ଇତିହାସରେ ସେପରି ଉଦାହରଣ ସମ୍ଭବତଃ ବିରଳ । ସେଥିପାଇଁ ସେମାନେ ନିଶ୍ଚୟ ସକ୍ରୃତଜ୍ଞ ଧନ୍ୟବାଦର ପାତ୍ର । ପୁସ୍ତକପ୍ରସାର ପକ୍ଷ ଅବକାଶରେ ଓଡ଼ିଶାର ଜନସମାଜର ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହୋଇପାରିଲେ ଉଦ୍ୟୋକ୍ତାମାନଙ୍କ ଶ୍ରମ ନିଶ୍ଚୟ ସଫଳ ହେବ ।

(କଳିଙ୍ଗ—୫-୪-୭୦)



# ଯୁବ-ସାହିତ୍ୟ

ଯୁବ ସାହିତ୍ୟର ସଂଜ୍ଞା କ'ଣ ?···ତରୁଣ ବୟସର ଲେଖକ-ଲେଖିକା ମାନଙ୍କର ରଚନା ? କିନ୍ତୁ ବହୁ ତରୁଣ ଲେଖକ ଲେଖିକା ଅଛନ୍ତି, ଯେଉଁମାନଙ୍କର ରଚନା, ପ୍ରୌଢ଼ ଓ ବୃଦ୍ଧମାନଙ୍କର ରଚନା ଠାରୁ ମୌଳିକ ଦୃଷ୍ଟିରୁ ସ୍ୱତନ୍ତ୍ର ନୁହେଁ ! ଯାହା କିଛି ପ୍ରଭେଦ, ତାହା ଶୈଳୀରେ, ଆଙ୍ଗିକରେ ; କିନ୍ତୁ ମେଜାଜରେ ନୁହେଁ ! ପ୍ରୌଢ଼ ଓ ବୃଦ୍ଧ ଲେଖକମାନେ ଚେଷ୍ଟା କଲେ ସେପରି ଶୈଳୀ ଓ ଆଙ୍ଗିକ ସାର୍ଥକତାର ଭାବରେ ପ୍ରୟୋଗ କରିପାରନ୍ତି । ଯୁବ-ସାହିତ୍ୟର ପ୍ରକୃତି ତାହେଲେ କ'ଣ ? ··· ଏକ୍ସପେରିମେଣ୍ଟେସନ୍ ? ପ୍ରୌଢ଼ ଓ ବୃଦ୍ଧ ଲେଖକମାନଙ୍କ ରଚନାରେ ଚେଷ୍ଟା କଲେ 'ଏକ୍ସପେରିମେଣ୍ଟେସନ୍' ଯେ ଉଦ୍ଭୁତ ନାହିଁ ନୁହେଁ । ସ୍ୱୟଂ ରବୀନ୍ଦ୍ରନାଥ ପରିଣତ ବାର୍ଦ୍ଧକ୍ୟରେ ଏକ୍ସପେରିମେଣ୍ଟେସନ୍‌ର ମୋହ ଛାଡ଼ି ନ ପାରି ଏଥିରେ ତରୁଣମାନଙ୍କ ସହିତ ଏକପ୍ରକାର ପ୍ରତିଯୋଗିତା ଆରମ୍ଭ କରିଦେଇଥିଲେ । ଫରାସୀ କବି ଭାଲେରୀଙ୍କ ପ୍ରଭାବରେ, ଫରାସୀ ଦେଶରେ ଏପରି ଏକ କବିକୁଳ ସୃଷ୍ଟି ହୋଇଥିଲେ ଯେଉଁମାନେ ବାକ୍ୟ ଓ ଶବ୍ଦର କୌଣସି ଧାର ଧାରନ୍ତି ନାହିଁ । କବିତା ନାମରେ ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣର ଖାମଖିଆଲି ସଂଯୋଜନା କରି, କବିତା ନାମରେ ସେମାନେ ବେଶ୍ ପ୍ରତିଷ୍ଠା ଅର୍ଜ୍ଜନ କରିପାରି ଥିଲେ । ରବୀନ୍ଦ୍ରନାଥ ସେପରି କବିତାର ମୋହ ଛାଡ଼ି ନପାରି ଏପରି କବିତା ମଧ୍ୟ ଲେଖିଛନ୍ତି··· "ଖଟ୍‌ଖଟ୍/ ମସ୍‌ମସ୍/ ଧଡ଼ାଧଡ଼୍/ ଧଡ଼ଫଡ଼୍/ ଧଡ଼ଫଡ଼୍/ ହୋ ହୋ ହୁ ହୁ ହା ହା/ ଟ ଠ ଡ଼ ଚ ଡ଼ ଡ଼ ହ୍/ ଇନ୍‌ସଷ୍ଟ୍ରୋ ହେଡ଼ସ୍ କିମ୍ବୋ ।" (୧୯୬୬ ସାଲ ୩ ତାରିଖ ସେପ୍‌ଟେମ୍ବର 'ଦେଶ୍" ପତ୍ରିକାରେ ଆବୁ ସୟୀଦ୍ ଅଇୟୁବ୍‌ଙ୍କ "କବିତାର ଭାଷା" ପ୍ରବନ୍ଧ ଦ୍ରଷ୍ଟବ୍ୟ ।)

ଏ କବିତାର ତତ୍ତ୍ୱ ହେଲା, ସଙ୍ଗୀତରେ ସା-ରେ-ଗା-ମା ପରି

କେତେକ ଅର୍ଥହୀନ ସ୍ୱରଗ୍ରାମରେ, ଯଦି ଗମ୍ଭୀର ବ୍ୟଞ୍ଜନା ଓ ସାର୍ଥକ କଳାସୃଷ୍ଟି ସମ୍ଭବ ହୋଇପାରୁଛି, ତା ହେଲେ ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣର ଅର୍ଥ ଉଦ୍ଦେଶ୍ୟହୀନ ସମାବେଶରେ କବିତା ସୃଷ୍ଟି ହୋଇପାରିବ ନାହିଁ କାହିଁକି ?

ରବୀନ୍ଦ୍ରଙ୍କ ବହୁ ପୂର୍ବରୁ କବିଚନ୍ଦ୍ର ଉପେନ୍ଦ୍ର ମଧ୍ୟ ଏପରି କବିତା ଯେ ଲେଖି ନାହାନ୍ତି ନୁହେଁ । ଉପେନ୍ଦ୍ର ମଧ୍ୟ ଲେଖିଛନ୍ତି···"ହା ହା ହା ହା ହା
ହୁଁ ହୁ ହୁଁ ହୁଁ ହୁଁ ହୁଁ ହାଁ ହାଁ ହାଁ ହାଁ ହାଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ
ଯେମନ୍ତେ କଲେ ସୁରତବାଣୀ । ତାଙ୍କ ପ୍ରିୟା ମୁଖୁ ନ ଥିବେ ଶୁଣି ।"

ମଧ୍ୟଯୁଗୀୟ କୌଣସି କୌଣସି ସଂସ୍କୃତ କାବ୍ୟକର୍ତ୍ତାଙ୍କ ରଚନାରେ ମଧ୍ୟ ଏପରି ଉଦ୍ଭଟତା ଦେଖିବା ପାଇଁ ମିଳିଯାଏ । ଆଙ୍ଗିକ ଓ ଶୈଳୀରେ ଏକ୍ସପେରିମେଣ୍ଟେସନ୍ ଯଦି ଯୁବ-ସାହିତ୍ୟର ପ୍ରକୃତି ହୁଏ, ତାହେଲେ ଉପେନ୍ଦ୍ରଭଞ୍ଜ ଓ ରବୀନ୍ଦ୍ରନାଥଙ୍କୁ କ'ଣ ଯୁବଲେଖକ ତାଲିକାରେ ନଆସିବ ? ଯୁବ-ସାହିତ୍ୟ ସମ୍ପର୍କରେ ଏ ସବୁ କେତେକ ଉତ୍ପୀଡ଼କ ପ୍ରଶ୍ନବାଚକ । ଯୁବ-ସାହିତ୍ୟ କିନ୍ତୁ ବୟସର ସୃଷ୍ଟି ନୁହେଁ; କିମ୍ବା ଏକ୍ସପେରିମେଣ୍ଟେସନ୍‌ର ବିଳାସ ନୁହେଁ । ଏହା ମୁଖ୍ୟତଃ ଏକ ମେଜାଜ୍ । ଜୀବନ ଓ ସମାଜ ପ୍ରତି ଏକ ଦୃଷ୍ଟିଭଙ୍ଗୀ ପୁଣି ପରିବେଶ ଓ ପାରିପାର୍ଶ୍ୱିକ ପରିସ୍ଥିତି ସମ୍ପର୍କରେ ଏକ ପ୍ରତିକ୍ରିୟା ! ଚେଷ୍ଟା କଲେ ସୁଦ୍ଧା ଏପରି ମେଜାଜ୍ ବୃଦ୍ଧ ଓ ପ୍ରୌଢ଼-ମାନଙ୍କଠାରେ ସମ୍ଭବ ହେବ ନାହିଁ···ଯେପରି ପଚାଶ ବର୍ଷର ପ୍ରୌଢ଼ ଭଦ୍ରଲୋକ, ଯେତେ ସ୍ମାର୍ଟ ହେଲେ ସୁଦ୍ଧା ୨୧ ବର୍ଷର ତରୁଣଟି ପରି କଦାପି ଦଉଡ଼ି ପାରିବେ ନାହିଁ, କିମ୍ବା ଆକସ୍ମିକ ଭାବରେ ସାକ୍ଷାତ ହୋଇଥିବା କୌଣସି ତରୁଣୀ ଉଦ୍ଦେଶ୍ୟରେ ରାତି ଉଜାଗର ରହି ପ୍ରେମ-କବିତା ଲେଖି ପାରିବେ ନାହିଁ । ଯୁବ-ସାହିତ୍ୟ ତେଣୁ ଆଙ୍ଗିକଗତ ନୁହେଁ, ଏହା ଆତ୍ମିକ ।

— ପାଶ୍ଚାତ୍ୟ ସାହିତ୍ୟରେ ଯୁବ-ସାହିତ୍ୟ କହିଲେ ବୁଝାଉଛି—ଆମେରିକାରେ Beat Generation ଓ ଇଂଲଣ୍ଡରେ Angry Young-man ଗୋଷ୍ଠୀର ସାହିତ୍ୟ । ଔପନ୍ୟାସିକ ଜାକ୍ କେରୁଆକ୍ ଓ କବି ଜିନ୍‌ସବର୍ଗ ହେଲେ ବିଟ୍ ଜେନେରେସନ୍ ସାହିତ୍ୟ ଓ ସଂସ୍କୃତିର ପ୍ରବକ୍ତା 'ବୀଟ' ଲେଖକଗୋଷ୍ଠୀଙ୍କ ସାହିତ୍ୟରେ ସମାଜ ପ୍ରତି କୌଣସି ଦାୟିତ୍ୱ ନାହିଁ । ଆଧ୍ୟାତ୍ମିକ ଶୂନ୍ୟତା, ନିଃସଙ୍ଗତା ଓ ପ୍ରତ୍ୟୟହୀନତାର ଅନ୍ଧକୂପ

ମଧ୍ୟରେ ଏକ ରହସ୍ୟମୟ ଅନୁଭୂତି ମଧ୍ୟରେ ସେମାନେ ନିମଜ୍ଜିତ। ଏଲ୍. ଏସ ଡି ଓ ମାରିଜୁଆନାର 'ହାଲୁସିନେସନ୍' ସେମାନଙ୍କ ସାହିତ୍ୟର ପ୍ରେରଣା। ସ୍ନାୟୁବିକ ଉତ୍ତେଜନା ମଧ୍ୟରେ ଏଇ ମୁହୂର୍ତ୍ତର ଉପଲବ୍ଧି ସେମାନଙ୍କର ସାହିତ୍ୟ ଓ ଜୀବନଚର୍ଯ୍ୟାର ପ୍ରକୃତି। ବୀଟ୍‌ନିକ ଓ ହିପି ସମାଜ ଏଇ ବୀଟ୍-ସଂସ୍କୃତି ଓ ସାହିତ୍ୟର ପ୍ରତିନିଧି! ଇଂଲଣ୍ଡର "ଆଙ୍ଗ୍ରୀ-ୟଙ୍ଗ୍" ଏମାନଙ୍କ ସହିତ ମେଜାଜ୍‌ରେ ସମାନ! "ଆଙ୍ଗ୍ରୀୟଙ୍ଗ" ସାହିତ୍ୟର ପ୍ରେରଣାଦାତା ହେଲେ ନାଟ୍ୟକାର ଜନ୍ ଆସ୍‌ବର୍ଣ୍ଣ୍। କିଙ୍ଗ୍‌ସ୍‌ଲେ ଆମିସ୍, ଜର୍ଜ ସ୍କଟ ଓ ଥମାସ୍ ହିନ୍ଦେ ପ୍ରମୁଖ ହେଲେ ଆଙ୍ଗ୍ରୀୟଙ୍ଗ ଗୋଷ୍ଠୀର କେତେକ ଉଲ୍ଲେଖଯୋଗ୍ୟ ଲେଖକ। ମାତ୍ର 'ବୀଟ୍ ଜେନେରେସନ୍' ଗୋଷ୍ଠୀଠାରୁ ଏମାନଙ୍କର ପାର୍ଥକ୍ୟ ହେଉଛି—ଏମାନଙ୍କ ସାହିତ୍ୟରେ ଗୋଟାଏ ରାଜନୈତିକ 'କମିଟ୍‌ମେଣ୍ଟ' ଅଛି। ଏମାନେ ସମସ୍ତେ ସାମ୍ୟବାଦୀ। ମାତ୍ର ସାମ୍ୟବାଦ ପ୍ରତି ମଧ୍ୟ ଏମାନଙ୍କର ଘୋର ସନ୍ଦେହ। ଥମାସ ହିନ୍ଦେଙ୍କ ମତରେ ସୋସିଆଲିଷ୍ଟ ଓ 'ଟୋରି' ଦୁହେଁ ସମାନ···ନରୋତ୍ତମ ଦାସ କହେ ସବ୍···"।

— ପାଶ୍ଚାତ୍ୟ ଯୁବ ସାହିତ୍ୟ ଏହିପରି ଭାବରେ ଯୁଗ ଯନ୍ତ୍ରଣାର ଏକ ପ୍ରତିଧ୍ୱନି। ଅତୀତ ଓ ବର୍ତ୍ତମାନ ବିରୁଦ୍ଧରେ ଏହା ଏକ ବିଦ୍ରୋହ। ଭବିଷ୍ୟତ ପ୍ରତି ଏକ ସନ୍ଦେହ। ଏହି ଯୁବ-ସାହିତ୍ୟର ପ୍ରେରଣା ଭାରତରେ ତରୁଣ ଲେଖକମାନଙ୍କର ରଚନାକୁ ମଧ୍ୟ ଅନୁପ୍ରେରିତ କରିଛି। କିନ୍ତୁ ଭାରତୀୟ ଯୁବ-ସାହିତ୍ୟ ପାଶ୍ଚାତ୍ୟ ଯୁବ-ସାହିତ୍ୟର ଆଙ୍ଗିକ ଉତ୍ତେଜନା ଓ ଯୌନତାକୁ କେବଳ ଅନୁକରଣ କରିଛି ସିନା; ତାହାର ବିଦ୍ରୋହ, ମୂଲ୍ୟବୋଧ ଓ ବାଣୀ ଦ୍ୱାରା ପ୍ରଭାବିତ ହୋଇଥିବା ପରି ମନେ ହୁଏ ନାହିଁ। ଭାରତରେ ଯୁବ-ଲେଖକ ଗୋଷ୍ଠୀ ସେମାନଙ୍କ ପରିବେଶ ଓ ପାରିପାର୍ଶ୍ୱିକ ପରିସ୍ଥିତି ସଂପର୍କରେ ବୀତଶ୍ରଦ୍ଧ, ପ୍ରତ୍ୟୟହୀନ···କିନ୍ତୁ ଏହା ବିରୁଦ୍ଧରେ ବିଦ୍ରୋହୀ ନୁହଁନ୍ତି। ସେମାନେ ତଥାପି ବିଶ୍ୱାସ କରନ୍ତି, ଏଇ ସମାଜର ପ୍ରତିଯୋଗିତା, ଭଦ୍ରଲୋକୀ ଓ ସଫଳତାରେ। ଭାରତୀୟ ଯୁବ-ସାହିତ୍ୟ ତେଣୁ ଅଟକି ଯାଇଛି, ସେଇ ଏକ୍ସପେରିମେଣ୍ଟେସନ୍‌ଠାରେ···ସେଥିରୁ ଆଗେଇବା ଆଉ ସମ୍ଭବ ହୋଇପାରୁ ନାହିଁ। —

(କଳିଙ୍ଗ—୧୪-୪-୭୦)



# ଜୀବନ ଉପରେ ସାହିତ୍ୟର ପ୍ରଭାବ

ଖ୍ରୀ: ପୂ: ୪୧୫...

ଦାର୍ଶନିକ ସକ୍ରେଟିସ୍ ସେଦିନ ଆସିଥିଲେ, ଏଥେନ୍ସରେ ମୁକ୍ତ ନାଟ୍ୟାଙ୍ଗନକୁ ନାଟ୍ୟକାର ଇଉରିପେଡ଼ିସ୍‌ଙ୍କ ଏକ ନାଟକର ଅଭିନୟ ଦେଖିବା ପାଇଁ। ସକ୍ରେଟିସ୍ ସାଧାରଣତଃ ରଙ୍ଗମଞ୍ଚ ଓ ଅଭିନୟ ଜଗତ ଠାରୁ ରହୁଥାନ୍ତି ବହୁତ ଦୂରରେ, ସ୍ୱେଚ୍ଛାକୃତ ନିର୍ବାସନ ମଧ୍ୟରେ। ସେଥିପାଇଁ ସକ୍ରେଟିସ୍ ହଠାତ୍ ଅଭିନୟ ଦେଖିବା ପାଇଁ ଆସିଥିବା ଏଥେନ୍-ସରେ ସେଦିନ କଛୁଟା ଗୁଞ୍ଜନ ସୃଷ୍ଟି କରିଥିଲା। କିନ୍ତୁ ଇଉରିପେଡିସ୍‌ଙ୍କ ନାଟ୍ୟ ପ୍ରତିଭା ସକ୍ରେଟିସ୍‌ଙ୍କୁ ସେଦିନ ରଙ୍ଗମଞ୍ଚର ପ୍ରଗଲ୍‌ଭତା ଭିତରକୁ ଟାଣି ଆଣିପାରିଥିଲା। ସେଦିନ ଇଉରିପେଡ଼ିସ୍‌ଙ୍କ ନାଟକ ଅଭିନୀତ ହେଉଥିଲା ସେଠାରେ।

ଏଥେନ୍ସର ଇତିହାସରେ ସେତେବେଳେ ରକ୍ତସ୍ରାବୀ ପେଲୋପନିସିୟାନ୍ ଯୁଦ୍ଧର ଦୁଷ୍କାଳ! ସେହି ପୃଷ୍ଠଭୂମିରେ ଟ୍ରୋଜନ୍ ଯୁଦ୍ଧର ଇତିହାସକୁ ଅବଲମ୍ବନ କରି, ଇଉରିପେଡ଼ିସ୍ ଲେଖିଥିଲେ ନାଟକ ଓ ତାହା ସେଠାରେ ସେଦିନ ଅଭିନୀତ ହେଉଥିଲା। କିନ୍ତୁ ମହାକବି ହୋମର୍‌ଙ୍କ "ଇଲିଆଡ଼୍" ପରେ, ଟ୍ରୟ ଯୁଦ୍ଧର ବିଷୟବସ୍ତୁ ଘେନି ଆଉ କ'ଣ ବା ଲେଖା ଯାଇପାରେ, ଯାହା ସକ୍ରେଟିସ୍‌ଙ୍କୁ ସୁଦ୍ଧା ଆକୃଷ୍ଟ କରିପାରନ୍ତା ?

ହୋମର୍ ଟ୍ରୟ ଯୁଦ୍ଧ ବର୍ଣ୍ଣନା କରିଥିଲେ, ବିଜେତାର ଦୃଷ୍ଟିକୋଣରୁ। ଆମେ ଯେତେ ଶାନ୍ତିବାଦୀ ହେଉନା କାହିଁକି, ଆମର ସବୁ ପୁରାଣ ଓ ମହାକାବ୍ୟର ଏକମାତ୍ର ଉପଜୀବ୍ୟ ହେଲା ଯୁଦ୍ଧ। ଯୁଦ୍ଧରେ ଶତ୍ରୁପକ୍ଷର ପରାଜୟ, ଲାଞ୍ଛନା ଓ ନିର୍ଯାତନା ଯେତିକି ଉତ୍କଟ ହୁଏ, ପୌରାଣିକ ମହାକବିମାନେ ସେମାନଙ୍କର "ନାୟକ"ମାନଙ୍କର କୀର୍ତ୍ତିଗାନରେ ସେତିକି

ମୁଖରିତ, ସେତିକି ପ୍ରଗଲ୍‌ଭ ହୋଇଥାନ୍ତି । ହୋମର୍ ମଧ୍ୟ ସେହି ସାଧାରଣ ନିୟମରୁ ବହିର୍ଭୂତ ନ ଥିଲେ । ମାତ୍ର ଇଉରିପେଡିସ୍ ସେହି ଯୁଦ୍ଧ ବର୍ଣ୍ଣନା କଲେ ପରାଜିତ, ଲାଂଛିତ ଓ ଅବମାନିତର ଦୃଷ୍ଟିକୋଣରୁ । ସମଗ୍ର ବିଶ୍ୱ-ସାହିତ୍ୟରେ ଯୁଦ୍ଧ ବିରୁଦ୍ଧରେ ଏହାହିଁ ବୋଧହୁଏ ସାହିତ୍ୟର ପ୍ରଥମ ପ୍ରତିବାଦ ।

"How are ye blind<br>
Ye treaders down of cities<br>
Ye that cast<br>
Temples to desolation<br>
And lay waste<br>
Tombs, the untrodden<br>
Sanctuaries where lie<br>
The ancient dead ;<br>
yourselves<br>
So soon to die".

କଥିତ ଅଛି, କାଷ୍ଠରସିକ ସକ୍ରେଟିସ୍ ସୁଦ୍ଧା ଏ ଆବୃତ୍ତିରେ ସେଦିନ ବିହ୍ୱଳିତ ହୋଇ ଘନ ଘନ କରତାଳି ଧ୍ୱନି ଦେଇଥିଲେ ।

ପେଲନ୍‌ସିଆନ୍ ଯୁଦ୍ଧରେ ପରାଜିତ ବନ୍ଦୀ ଏଥେନିଆନ୍‌ମାନେ ସେମାନଙ୍କ ନିଗୃହୀତ କାରାଗାର ମଧ୍ୟରେ ଏହି ନାଟକ ଆବୃତ୍ତି କଲାବେଳେ, କାରାରକ୍ଷୀ-ମାନେ ଏହାର ପ୍ରଭାବରେ ସେମାନଙ୍କୁ କାରାମୁକ୍ତ କରିଥିବା ଇତିହାସରେ ଲିପିବଦ୍ଧ ଅଛି । ଏହି ମହାକବି ଇଉରିପେଡ଼ିସ୍‌ଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କରି ଗେଟେ କହିଛନ୍ତି, "ଇଉରିପେଡ଼ିସ୍‌ଙ୍କ ପାଦରେ ଜୋତା ପିନ୍ଧାଇ ଦେବା ପାଇଁ ସୁଦ୍ଧା ଏପର୍ଯ୍ୟନ୍ତ କୌଣସି ନାଟ୍ୟକାର ତଥାପି ଜନ୍ମି ନାହାନ୍ତି ।" "Have all the nations of the world since his time produced one dramatist worthy to hand him his slippers ?" କିନ୍ତୁ ନିଶ୍ଚିତ ଭାବରେ ଜଣେ ନାଟ୍ୟକାର ଅବଶ୍ୟ ଜନ୍ମି-ଥିଲେ, ଯିଏ ହୁଏତ ହୋଇପାରନ୍ତି ଇଉରିପେଡ଼ିସ୍‌ଙ୍କ ଊର୍ଦ୍ଧ୍ୱରେ

ସେକ୍‌ସପିୟର । ମାତ୍ର ସେପରି ତୁଳନାତ୍ମକ ବିଚାରର ଏ ଆଲୋଚନାର ଉଦ୍ଦେଶ୍ୟ ନୁହେଁ । ମନୁଷ୍ୟ ଜୀବନରେ ସାହିତ୍ୟର ପ୍ରଭାବ ସମ୍ପର୍କରେ ଏଠାରେ ଇଉରିପେଡ଼ିସ୍‌ଙ୍କ ପ୍ରସଙ୍ଗ ସୂଚିତ ହୋଇଅଛି ମାତ୍ର !

ନାଟକର କ୍ରମବିକାଶ ପଥରେ ଆଜ ଆମ୍ଭେମାନେ ଆସି ପହଞ୍ଚିଲୁଣି "ଆବ୍‌ସର୍ଡ଼-ଡ୍ରାମା" ଓ "ଆଣ୍ଟି-ଥିଏଟର" ଯୁଗରେ । ଇଉନାସ୍କୋ, ସାର୍ତ୍ର, ବେକେଟ୍ ପ୍ରମୁଖ ଆଜ ଆବସର୍ଡ଼ ଡ୍ରାମା ଯୁଗର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର । ସେଦିନ "ଆବ୍‌ସର୍ଡ଼-ଡ୍ରାମା"ର ଅନ୍ୟତମ ପ୍ରବର୍ତ୍ତକ ସାମୁଏଲ୍ ବେକେଟ୍ ନୋବେଲ୍-ପୁରସ୍କାରରେ ସୁଦ୍ଧା ସମ୍ମାନିତ ହେଲେ । କିନ୍ତୁ ଏମାନଙ୍କ ନାଟକ ଆବୃତ୍ତି କଲେ କେହି ଆଜ କାରାମୁକ୍ତ ପାଇବା ତ ଦୂରର କଥା—ବାତୁଳତା ଅଭିଯୋଗରେ କାରାବନ୍ଧନ ମିଳିଯିବା ସୁଦ୍ଧା ବିଚିତ୍ର ନୁହେଁ ।

ଜୀବନ ଉପରେ ସାହିତ୍ୟର ସୁଦୂରପ୍ରସାରୀ, ଗଭୀର ପ୍ରଭାବ ଯେ ବିଲୀନ ହୋଇଛି—ଏହାହିଁ ତ ତାହାର ନିଦର୍ଶନ ! ସମ୍ପ୍ରତି ସାହିତ୍ୟ ଓ ସଂସ୍କୃତି ନାମରେ ସଂଗଠନ, ଆୟୋଜନ ଓ ଉଦ୍‌ବୋଧନ ଯେତିକି ବୃଦ୍ଧି ପାଉଛି ସମାଜ ଜୀବନରେ ସେ ସବୁର ଅଭାବ କ୍ରମେ ସେତିକି ପରିଲକ୍ଷିତ ହେଉଛି । ସାହିତ୍ୟର ପ୍ରଭାବ ଅବଶ୍ୟ ମନୁଷ୍ୟର ମନୋରାଜ୍ୟରେ । ସେଥିପାଇଁ ମନୁଷ୍ୟ ଜୀବନରେ ବିଜ୍ଞାନର ପ୍ରଭାବ ଯେପରି କଳନା କରାଯାଇ ପାରୁଅଛି—ସାହିତ୍ୟର ପ୍ରଭାବ ସେପରି କଳନା କରିବା ପାଇଁ ଏପର୍ଯ୍ୟନ୍ତ କୌଣସି ପଦ୍ଧତି ଅଥବା ପ୍ରକ୍ରିୟା ଆବିଷ୍କୃତ ହୋଇପାରି ନାହିଁ । ତଥାପି ସେଦିନ ଇଉରିପେଡ଼ିସ୍‌ଙ୍କ ସାହିତ୍ୟର ଯେଉଁ ପ୍ରଭାବ ସମାଜରେ ଥିଲା, ଆଜ ଇଉନାସ୍କୋଙ୍କ ସାହିତ୍ୟର ସେପରି ପ୍ରଭାବ ରହିଛି ବୋଲି କଦାପି ସନ୍ଦେହ ସୁଦ୍ଧା କରାଯାଇ ନ ପାରେ ।

କେହି କେହି ହୁଏତ କହିପାରନ୍ତି—ଇଉରିପେଡ଼ିସ୍‌ଙ୍କ ସାହିତ୍ୟ ପରି ସାହିତ୍ୟ ଇତିମଧ୍ୟରେ ଆଉ ରଚିତ ହୋଇନାହିଁ । ମାତ୍ର ସାହିତ୍ୟର ଇତିହାସ ଏହାକୁ କଦାପି ସ୍ୱୀକାର କରିବ ନାହିଁ । ଅପର ପକ୍ଷରେ ମନୁଷ୍ୟ ସାହିତ୍ୟଠାରୁ ଦୂରେଇ ଯାଉଥିବାରୁ, ସାହିତ୍ୟ ମନୁଷ୍ୟ ଜୀବନରେ

ତାହାର ଆତ୍ମସମ୍ବେଦନଶୀଳତା ହରାଇଅଛି । ସେଇଥିପାଇଁ ବୋଧହୁଏ ଆଜ ସୃଷ୍ଟିଧର୍ମୀ ଲେଖକମାନଙ୍କ ପରିବର୍ତ୍ତେ ସାହିତ୍ୟ-ସଂଗଠକ ଓ ପ୍ରଚାରକମାନଙ୍କର ପ୍ରାଧାନ୍ୟ ବେଶୀ । ମାତ୍ର ସାହିତ୍ୟ ତାର ଉତ୍ସମୂଳ ଖୋଜି ନ ପାଇବା ପର୍ଯ୍ୟନ୍ତ ମନୁଷ୍ୟର ଜୀବନ ଉପରେ ଯେ କୌଣସି ପ୍ରଭାବ ବିସ୍ତାର କରି ପାରିବ ନାହିଁ ଏହା ନିଶ୍ଚିତ କଥା ।

(କଳିଙ୍ଗ, ତା ୧୧-୧-୭୦)



# ରୂପାନ୍ତର

ଆଜ ଅବଶ୍ୟ ସାହିତ୍ୟ ଅଛି ଲିଖିତ ରଚନା ଅର୍ଥରେ । କିନ୍ତୁ ଶବ୍ଦ ଓ ଅର୍ଥ ମଧ୍ୟରେ ସଂହତ ଅର୍ଥରେ ସାହିତ୍ୟ ନାହିଁ । ଭାବଠାରୁ ଭାଷା ଓ ଭାଷାଠାରୁ ଭାବର ବିଚ୍ଛେଦ ଘଟିଛି । ଫଳରେ ସାଧାରଣ ପାଠକଙ୍କ ନିକଟରେ ସାମ୍ପ୍ରତିକ ରଚନା, ଗୋଲକଧନ୍ଦା ଶବ୍ଦଧନ୍ଦା ପରି ଦୁର୍ବୋଧ୍ୟ ଓ ରହସ୍ୟମୟ ହୋଇ ପଡ଼ୁଛି···"

"All dark no begging
No giving no words
No sense no need···"

ନୋବେଲ ପୁରସ୍କାର-ପ୍ରାପ୍ତ ଜଣେ ସାହିତ୍ୟିକ ସାମୁଏଲ ବେକେଟ୍‌ଙ୍କ ରଚନାରୁ (Words & Music) ଏହା ଉଦ୍ଧୃତ ! ମାତ୍ର ଏହାର ଅର୍ଥ କ'ଣ ? ଅର୍ଥ ଅଛି ନିଶ୍ଚୟ ! ମାତ୍ର ଶବ୍ଦ ଓ ଅର୍ଥ ମଧ୍ୟରେ ସମ୍ପର୍କ ଶୃଙ୍ଖଳା ଉପରେ ତାହା ପର୍ଯ୍ୟବସିତ ନୁହେଁ । କେବଳ କବିତା ନୁହେଁ,—ଗଦ୍ୟକୁ ମଧ୍ୟ ଏହାର ସଂକ୍ରମଣ କ୍ରମେ ଘଟିଲାଣି !

ଆଜ ସମାଜ ମଧ୍ୟ ରହିଛି ; ବହୁ ଲୋକ ଏକତ୍ର, ଏକ ସହରରେ ଏକ ସାହିରେ, ବସ୍ତିରେ ଅଥବା ମହଲ୍ଲାରେ ବସବାସ କରି ରହୁଥିବା ଅର୍ଥରେ । ମାତ୍ର କାହାରି ସହିତ କାହାରି କୌଣସି ସମ୍ପର୍କ ନାହିଁ ! ଏମାନେ ପ୍ରତ୍ୟେକେ ପ୍ରତ୍ୟେକଠାରୁ ସମ୍ପର୍କଚ୍ୟୁତ ବା ଆଇସୋଲେଟେଡ୍ । କୃଷିଭିତ୍ତିକ, ପ୍ରାକ୍‌ଶିଳ୍ପିକ ଗ୍ରାମ୍ୟ ସମାଜର ଜୀବନବଦ୍ଧତା ଏ ସମାଜରେ ଖୋଜିଲେ ମିଳିବ ନାହିଁ । ସେହି ଦୃଷ୍ଟିରୁ ଆଜ "ସୋସାଇଟୀ" ଅଛି— କିନ୍ତୁ ସମାଜ ନାହିଁ । ଏ "ସୋସାଇଟୀ" ପୁଣି ସହଯୋଗଭିତ୍ତିକ ନୁହେଁ । ପାରସ୍ପରିକ ଶତ୍ରୁ, ପ୍ରତିଯୋଗିତା ଏ "ସୋସାଇଟୀ"ର ଭିତ୍ତି । ସମାଜର

ସାମୂହିକ ଦୁର୍ଯୋଗ ଦୁର୍ଭାଗ୍ୟରେ ଅଂଶଗ୍ରହଣ କରିବା ପାଇଁ ଏ "ସୋସାଇଟୀ" ଉଦ୍ଦିଷ୍ଟ ନୁହେଁ । ଯଦି କୁହାଯାଏ, ମିସେସ୍ ଏମ୍, ଜଣେ ସୋସାଇଟୀ-ଲେଡୀ—ଆମେ ବୁଝୁ ମିସେସ୍ ଏମ୍, ହାସ୍ୟମୟୀ, ଲାସ୍ୟମୟୀ, ତରଙ୍ଗିଣୀ । ମିସେସ୍ ଏମ୍‌ଙ୍କ ପାଇଁ ସୋସାଇଟୀ ଆବଶ୍ୟକ—ହିପ୍‌ଷ୍ଟର କାଯ଼ଦାରେ ପିନ୍ଧା ତାଙ୍କ ଦାମୀ ଶାଢ଼ୀ ଆଉ ଡାଏମଣ୍ଡର ଔଜ୍ଜ୍ୱଲ୍ୟ ପ୍ରଜ୍ଜ୍ୱଳିତ କରିବା ପାଇଁ, ଏକ ପୃଷ୍ଠଭୂମି ରୂପେ ।

ଆମେ ଯେତେବେଳେ କହୁ "ମିଷ୍ଟର ଏମ୍ ବେଶ୍ ସୋସିଏବଲ୍", ସେତେବେଳେ ବୁଝୁ ମିଷ୍ଟର ଏମ୍ ତାଙ୍କ ଅନ୍ୟାୟୋପାର୍ଜିତ ଅର୍ଥର ଗୋଟାଏ ସଦ୍‌ଗତି ପାଇଁ ଅନେକ କକ୍‌ଟେଲ ପାର୍ଟି ଆୟୋଜନ କରିଥାନ୍ତି । ଗୋଟାଏ ଦୃଷ୍ଟିରୁ 'ସୋସାଇଟୀ' ହେଲା ଅସାମାଜିକତାର ଆଡ୍‌ଡ଼ା । ଯେଉଁମାନେ ଏହାକୁ "ରିଜେକ୍ଟ" ବା ପ୍ରତ୍ୟାଖ୍ୟାନ ପରିହାର କଲେ—ସେମାନେ ହେଲେ "ଆଣ୍ଟି-ସୋସିଆଲ୍", "ଡ୍ରପ୍-ଆଉଟ" ଇତ୍ୟାଦି ଇତ୍ୟାଦି ।

ଅର୍ଥାତ୍ ଆଜି ଯେପରି ଶବ୍ଦାର୍ଥ ମଧ୍ୟରେ ସମ୍ପର୍କଚ୍ୟୁତ ସାହିତ୍ୟ ଅଛି ବ୍ୟକ୍ତି ଓ ସମଷ୍ଟି ମଧ୍ୟରେ ସେହିପରି ସମ୍ପର୍କଚ୍ୟୁତ ସମାଜ ମଧ୍ୟ ରହିଛି । ପ୍ରତ୍ୟେକେ ପ୍ରତ୍ୟେକଠାରୁ "ଆଲିୟେନେଟେଡ୍" । କାହା ସହିତ କାହାର କୌଣସି ସମ୍ପର୍କ ନାହିଁ । ଏ ପରିସ୍ଥିତିରେ କବିତା ଗଳ୍ପଠାରୁ ନାଟକ ଉପନ୍ୟାସ ପର୍ଯ୍ୟନ୍ତ ସବୁ ହୋଇ ଉଠିଛି ବ୍ୟକ୍ତିସର୍ବସ୍ୱ । ଏ ସାହିତ୍ୟରେ ସମାଜ ଚେତନା ଓ ସାମାଜିକ ଆଭିମୁଖ୍ୟ ଖୋଜିବାର ପ୍ରୟାସ ବୃଥା । ଯେଉଁଠି ସମାଜ ଓ ସାମାଜିକତା ନାହିଁ; ସେଠାରେ ସମାଜ ଚେତନା ବା ସାମାଜିକ ଆଭିମୁଖ୍ୟ ଆସିବ କୁଆଡୁ ? ଆଜିର ବ୍ୟକ୍ତିଠାରେ ପୁଣି ସେଦିନର ସମନ୍ୱିତ ନାହିଁ । କେତେକ ଖଣ୍ଡିତ ମୁହୂର୍ତ୍ତର ଉତ୍ତେଜନା ଆବେଗ, ସ୍ପନ୍ଦନ, ବ୍ୟର୍ଥତା ଓ ଅବସାଦର ସେ ଏକ ସମଷ୍ଟି । ଏ ମନୁଷ୍ୟର ଭାଷା ତେଣୁ ଆଜି ସଂକ୍ଷିପ୍ତ ଓ ଖଣ୍ଡିତ । ସେଥିପାଇଁ ସାମ୍ପ୍ରତିକ ନାଟକରେ ସଂଳାପସବୁ ଅତି ସଂକ୍ଷିପ୍ତ, ଅତି ଖାପ୍‌ଛଡ଼ା । ଶବ୍ଦର ଅର୍ଥ ବଦଳିଯିବା ଫଳରେ ପରିଚିତ ପ୍ରାଚୀନ ଶବ୍ଦଗୁଡ଼ିକର ବ୍ୟଞ୍ଜନା ମଧ୍ୟ ବଦଳି ଯାଇଛି···ସାମୁୟେଲ୍ ବେକେଟ୍‌ଙ୍କର ଏକ ଚରିତ୍ରର ଭାଷାରେ···

"What ? Is love the word ? Is soul the word ?

Do we mean love when we say love ? Soul, when we say soul ?" (Words & Music)

ମନୁଷ୍ୟର ଚେତନା ଯେତେବେଳେ ଦୁର୍ବୋଧ, ତାର ପରିପ୍ରକାଶ ବା ସାହିତ୍ୟ ମଧ୍ୟ ଦୁର୍ବୋଧ ଓ କ୍ଲିଷ୍ଟ ହେବା ଅବଧାରିତ ।

ଇଏ ହେଲା ପାଶ୍ଚାତ୍ୟ ସାହିତ୍ୟର ପୃଷ୍ଠଭୂମି । ଭାରତକୁ ଏହା ଆଜି ବୃଥା ଆମଦାନୀ କରିବା ପାଇଁ ସାହିତ୍ୟିକ, ସାମାଜିକ ଓ ବୈଷୟିକ ପରିସ୍ଥିତି ଅଛି କି ? ପ୍ରତ୍ୟେକ ସୃଷ୍ଟିଧର୍ମୀ ଲେଖକ ତାହା ଚିନ୍ତା କରିବା ଆବଶ୍ୟକ ।



# ଶେଷ-ବନ୍ଦୀ ଭାରତୀ

ସାହିତ୍ୟର ଔଜ୍ଜ୍ୱଲ୍ୟଦୀପ୍ତ ସିଂହାସନ ଆଜି ହୀନପ୍ରଭ···ସମାଜ ଜୀବନରେ ଶୁଦ୍ଧ ସାହିତ୍ୟର ପ୍ରଭାବ କ୍ରମବିଲୀୟମାନ। ଆଜି ତେଣୁ ବିଶ୍ୱସାହିତ୍ୟରେ ସୁଦ୍ଧା ଶୃଙ୍ଖଳା ସୃଷ୍ଟି କଲାଭଳି କୌଣସି ଉପନ୍ୟାସ, କ୍ଷୁଦ୍ରଗଳ୍ପ, କାବ୍ୟ ଅଥବା କବିତା ଆଖିରେ ଆଉ ପଡ଼େ ନାହିଁ। ୟୁରୋପ, ଇଂଲଣ୍ଡ ଓ ଆମେରିକାରେ ମଧ୍ୟ ଶୁଦ୍ଧ ସାହିତ୍ୟିକ ଆଜିର ସମାଜ ଜୀବନରେ ପ୍ରତିଷ୍ଠାଚ୍ୟୁତ। ଫିଲ୍ମ ବା ଚଳଚ୍ଚିତ୍ର, ଟେଲିଭିଜନ ଓ ରେଡ଼ିଓ ମଧ୍ୟରେ ଆଜିର ପାଠକସମାଜ ତାହାର ସାହିତ୍ୟ ପିପାସା ନିବାରିତ କରୁଛି। ଆଜିର "କ୍ରେଜ୍" (Craze) ହେଉଛି ନେତା, ବାବାଜୀ ଆଉ ଫିଲ୍ମ। ଶୁଦ୍ଧ ସାହିତ୍ୟିକ, ଶୁଦ୍ଧ ସଙ୍ଗୀତଜ୍ଞମାନଙ୍କ ପରି କ୍ରମେ ସମାଜର କେନ୍ଦ୍ରବିନ୍ଦୁଠାରୁ ଦୂରରୁ ଦୂରକୁ ଚାଲିଯାଉଛି, ନିଖିଳ ସାହିତ୍ୟରସିକ ଗୋଷ୍ଠୀର ସଂକୀର୍ଣ୍ଣ ପରିସର ଭିତରକୁ।

ତଥାପି ବିଗତ ଯୁଗର ଔପନ୍ୟାସିକ ଓ କବିମାନଙ୍କର ସ୍ମୃତିକୁ ଆଜି ଏକ ସାଇତା ସମ୍ପଦପରି ସଜାଡ଼ି ରଖିବାରେ, ଏବେ ଯେପରି ଉଦ୍ୟମ ଆରମ୍ଭ ହୋଇଛି, ତାହା ହୁଏତ ପୂର୍ବେ ଦେଖା ନ ଥିଲା। ସେମାନଙ୍କ ସ୍ମୃତିର ଉଦ୍‌ବୋଧନ ଓ ସଂରକ୍ଷଣ ମଧ୍ୟରେ ଏ ଯୁଗର ଚେତନା କେବଳ ଉଦ୍ଦୀପିତ ହେଉନାହିଁ ; ସେମାନେ ହୋଇ ପଡୁଛନ୍ତି ସମାଜର 'ଇଗୋ' ବା ଅଭିମାନର ସଂକେତ। କୌଣସି ବୈଜ୍ଞାନିକ ଅଥବା ରାଷ୍ଟ୍ରନେତା ପକ୍ଷରେ ଏ ସ୍ଥାନ ଅଧିକାର କରିବା ସମ୍ଭବ ହେଉନାହିଁ।

ସେଦିନ ପ୍ରଖ୍ୟାତ ବଙ୍ଗଳା ଔପନ୍ୟାସିକ ବିଭୂତିଭୂଷଣଙ୍କ ଘରଦ୍ୱାରକୁ ପଶ୍ଚିମବଙ୍ଗଳା ସରକାର ଏକ ଜାତୀୟ ସମ୍ପଦରୂପେ ହାତକୁ ନେଲେ। କଲିକତାର "ଦେଶ" ପତ୍ରିକା ଏ ସଂପର୍କରେ ଲେଖିଛନ୍ତି·····

"ପଥେର ପାଞ୍ଚାଲୀ-ପ୍ରସିଦ୍ଧ ବିଭୂତିଭୂଷଣ ବନ୍ଦୋପାଧ୍ୟାୟଙ୍କ ପୈତୃକ

ଭିଟା, ପଶ୍ଚିମବଙ୍ଗ ସରକାରଙ୍କୁ ଅର୍ପଣ କରାଯାଇଅଛି । କଲିକତାଠାରୁ ୫୦ ମାଇଲ୍ ଦୂରରେ ଅବସ୍ଥିତ ବନଗାଁର ସମୀପବର୍ତ୍ତୀ ବାରାକପୁର ଗ୍ରାମର ଏହି ପଲ୍ଲୀନିକେତନଟି "ବିଭୂତିଭୂଷଣ ସ୍ମୃତି ସଂଗ୍ରହଶାଳା" ନାମରେ ଅଭିହିତ ହେବ । ଏଠାରେ ରହିବ ବିଭୂତିବାବୁଙ୍କ ଲେଖା ଚିଠିପତ୍ର, ପାଣ୍ଡୁଲିପି ଏବଂ ଦୈନନ୍ଦିନ ବ୍ୟବହାରର ଜିନିଷପତ୍ର । ପାଖରେ ରହିବ ଏକ ଅତିଥିଶାଳା । ବିଭୂତିଭୂଷଣଙ୍କ କନିଷ୍ଠଭ୍ରାତା ସ୍ୱର୍ଗୀୟ ନୁଟ ବିହାରୀ ବନ୍ଦୋପାଧ୍ୟାୟଙ୍କ ନାମରେ ଏହାର ନାମକରଣ ହେବ । ସେଠାରେ କବି, ସାହିତ୍ୟିକ ଓ ସାହିତ୍ୟପ୍ରେମୀମାନେ ଅବସର ସମୟ ଯାପନ କରି ପାରିବେ । ରାଜ୍ୟ ସରକାର ଏ ଅତିଥିଶାଳାର ଦାୟିତ୍ୱ ମଧ୍ୟ ବହନ କରିବେ ।"

ବାଲେଶ୍ୱରରେ ଫକୀରମୋହନଙ୍କ ବାସଗୃହ ଆଜି ଏକ ଭଗ୍ନସ୍ତୂପରେ ପରିଣତ ହୋଇ, କୌଣସି ସେଠ, ଖରିଦଦାରଙ୍କ ଅପେକ୍ଷା କରୁଛି । ସୋରୋ ନିକଟରେ କବିବର ରାଧାନାଥଙ୍କ ଭିଟାରେ ଆଜି ଆଗଛାର ଜଙ୍ଗଲ ।

କିନ୍ତୁ ସାହିତ୍ୟ ଓ ସାହିତ୍ୟିକ ସମାଜ ଜୀବନର କେନ୍ଦ୍ରବିନ୍ଦୁରୁ ଆଜି ଅପସାରିତ ହୋଇଥିବାବେଳେ, ତାହାର ସ୍ମୃତି ସଂରକ୍ଷଣରେ ଏ ବ୍ୟାକୁଳତା କାହିଁକି ? ହୁଏତ ଏହି କୃତି ଔପନ୍ୟାସିକ, ବଙ୍ଗଳାର ମର୍ମଭୂମି ଯେପରି ଆବିଷ୍କାର କରିଥିଲେ, ତାହା ପ୍ରତ୍ୟେକ ବଙ୍ଗଭାଷୀର ପ୍ରାଣକୁ ସ୍ପର୍ଶ କରିଥିଲା । ଏହି ଔପନ୍ୟାସିକଙ୍କ ସୃଷ୍ଟି ମଧ୍ୟରେ ବଙ୍ଗଭାଷୀ ପାଠକ ସମାଜର ହୁଏତ ଯେପରି ଆତ୍ମପରିଚୟ ଘଟିଥିଲା । ସମାଜର ଚେତନାଶୀଳ ମନ ଉପରେ ଥାଇପାରେ ରାଷ୍ଟ୍ରନାୟକଙ୍କଠାରୁ ଆରମ୍ଭ କରି ଚଳଚିତ୍ର ନାୟକଙ୍କ ପର୍ଯ୍ୟନ୍ତ ବହୁନାୟକଙ୍କ ସୋଚ୍ଚାରିତ କୋଳାହଳ । ମାତ୍ର ସମାଜର ଅବଚେତନରେ ଯାହାର ପ୍ରତିଷ୍ଠା—ସେ ହୁଏତ ଜଣେ ନିଃସଙ୍ଗ କବି, କିମ୍ବା ଲେଖକ । ବାଲ୍ମୀକି ନ ଥିଲେ ରାମଚନ୍ଦ୍ର ନଥାନ୍ତେ । ମାତ୍ର ରାମଚନ୍ଦ୍ର ନ ଥିଲେ ସୁଦ୍ଧା ବାଲ୍ମୀକି ସମ୍ଭବ ହୋଇ ପାରିଥାନ୍ତେ ।

ସାଂପ୍ରତିକ କାଳ ଓ ପରିବେଶରେ ସାହିତ୍ୟ ଓ ସାହିତ୍ୟିକର କୌଣସି ପ୍ରତ୍ୟକ୍ଷ ପ୍ରଭାବ ଆଜି ଅବଶ୍ୟ ଥାଇ ନ ପାରେ । ମାତ୍ର ତାହାର ପ୍ରଭାବ

ଉତ୍ତର କାଳର ଚେତନାରେ । ଯେଉଁ ଲେଖା ଓ ଯେଉଁ ଲେଖକ ଜାତିର ଅବଚେତନରେ ସ୍ଥାନଲାଭ କରିପାରେ, ତାହା ଓ ସେଇହିଁ ପ୍ରକୃତରେ ଅବିନଶ୍ୱର । ସାହିତ୍ୟ ତେଣୁ 'ମଡ଼ର୍ଣ୍ଣ' ନୁହେଁ ବା 'କନ୍‌ଭେନ୍‌ସନାଲ' ନୁହେଁ—ଏହା ବିଶୁଦ୍ଧ ଭାବରେ ସାହିତ୍ୟ । ଆପାତ ଦୃଷ୍ଟିରେ ଏ ସାହିତ୍ୟର କୌଣସି କାର୍ଯ୍ୟକାରୀ ପ୍ରଭାବ ଥାଇ ନ ପାରେ ; କିନ୍ତୁ ଏପରି ସାହିତ୍ୟ ନ ଥିଲେ, ମାନସିକ ସୌକୁମାର୍ଯ୍ୟରେ ସମାଜ ଯେପରି ଦରିଦ୍ର ହୋଇଥାନ୍ତା, ମାନବିକ ଚେତନାରେ ସେହିପରି ହୋଇ ଉଠନ୍ତା ହୀନପ୍ରଭ । ସାହିତ୍ୟ ନ ଥିଲେ ସେ ସାହିତ୍ୟ ସୃଷ୍ଟି କରି ବସନ୍ତା !

(କଳିଙ୍ଗ ତା ୧ । ୨ । ୭୦)



# ସାହିତ୍ୟର ଭବିଷ୍ୟତ

ସମାଜ ଉପରେ ସାହିତ୍ୟର ପ୍ରଭାବ ଯାହା ହେଉନା କାହିଁକି, ସମାଜ କିନ୍ତୁ ସାହିତ୍ୟକୁ ଗଭୀର ଭାବରେ ପ୍ରଭାବିତ କରିଥାଏ । ସମାଜର ଗତି ଓ ରୁଚିରେ ପରିବର୍ତ୍ତନ ସାହିତ୍ୟକୁ ମୌଳିକ ଭାବରେ ପରିବର୍ତ୍ତିତ କରିଥାଏ । ସାହିତ୍ୟ ଯେତେବେଳେ ଆଙ୍ଗିକ ଓ ପ୍ରକୃତିରେ ସମାଜର ପରିବର୍ତ୍ତିତ ମେଜାଜ୍ ସହିତ ସାମଞ୍ଜସ୍ୟ ରକ୍ଷା କରି ନ ପାରେ—ସେତେବେଳେ ସେପରି ସାହିତ୍ୟର ଗୁଣାତ୍ମକ ଉତ୍କର୍ଷ ଯାହା ଥାଉନା କାହିଁକି, ତାହା ଅଚଳ ହୋଇପଡ଼େ ।

ଊନବିଂଶ ଶତାବ୍ଦୀ ୟୁରୋପରେ, ଯନ୍ତ୍ରଶିଳ୍ପ ବିକାଶର ଏକ ପରିଣତି ଥିଲା, ସମାଜରେ ବିଦଗ୍ଧ ସୌକୁମାର୍ଯ୍ୟର ବିଲୟ । ଯନ୍ତ୍ରଶିଳ୍ପର ବିକାଶ ଫଳରେ, ଏପରି ଏକ ମଧ୍ୟବିତ୍ତଶ୍ରେଣୀ ସୃଷ୍ଟି ହୋଇଥିଲେ ଯେଉଁମାନେ ସାହିତ୍ୟର ବିରୋଧୀ ନ ଥିଲେ ହେଁ, ଯେଉଁମାନଙ୍କଠାରେ ସାହିତ୍ୟିକ ରୁଚିର ଅଭାବ ରହିଗଲା । ସେମାନେ ଥିଲେ ବୁଦ୍ଧି ସାହିତ୍ୟର ପରିପନ୍ଥୀ । ଊନବିଂଶ ଶତାବ୍ଦୀ ଆମେରିକା ଓ ୟୁରୋପରେ ଏହି ଆଭିମୁଖ୍ୟ ଲକ୍ଷ୍ୟକରି, ବିଶିଷ୍ଟ ସମାଲୋଚକ ଜେ. ବି. ପ୍ରିଷ୍ଟ୍ଲେ ଲେଖିଥିଲେ···

"······It is true, hawever, in western Europe and the United states, the age saw the rapid growth both in numbers and influence of a class largely hostile to literature,"—(Literature and Western Man)

ଊନବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସାହିତ୍ୟ ତେଣୁ ମୁଖ୍ୟତଃ ଏହା ଅସାହିତ୍ୟିକ-ସମାଜର ଏକ ପ୍ରତିବାଦରେ ପରିଣତ ହୋଇଥିଲା । ଫରାସୀ ସାହିତ୍ୟରେ ଫ୍ଲୁବେୟାର୍ ଓ ବଦେଲେୟାର, ଇଂରାଜୀ ସାହିତ୍ୟରେ ଡିକେନ୍ସ (Our mutual friend ଉପନ୍ୟାସରେ) ପ୍ରମୁଖ ଏହାର

ଉଦାହରଣ । କାର୍‌ଲାଇଲ୍ ଏହି ଯୁଗର ସମାଜକୁ ଆକ୍ଷେପ କରି ଏହାର ନାମକରଣ କରିଥିଲେ gigmanity (ଏକ ଘୋଡ଼ା ବିଶିଷ୍ଟ 'ଗିଗ୍' ଘୋଡ଼ାଗାଡ଼ି ସେ ଯୁଗର ସମ୍ଭ୍ରାନ୍ତ୍ୟର ଧାରକ ଓ ବାହକ ଥିଲା; (ଆଜିର 'ଆମ୍ବାସାଡ଼ର୍' ପରି !) ଇବ୍‌ସେନ ଏହି ସମାଜର ଶଠତାର ଆବରଣୀ ଛିନ୍ନ ବିଦୀର୍ଣ୍ଣ କରିଥିଲେ ତାଙ୍କର ନାଟକମାନଙ୍କରେ । ଯନ୍ତ୍ରଶିଳ୍ପ-ବିପ୍ଳବ ସାହିତ୍ୟ ଉପରେ ଯେଉଁ ଆଘାତ ହାଣିଥିଲା, ତାହାର ପ୍ରତିବାଦ ଓ ପ୍ରତିରୋଧରେ ସାହିତ୍ୟ ମୁଖର ହୋଇ ଉଠିଥିଲା ।

କିନ୍ତୁ ଏପରି ସାହିତ୍ୟ ସୀମାବଦ୍ଧ ରହିଲା, ସାହିତ୍ୟ ସଚେତନ ଏକ କ୍ଷୁଦ୍ରଗୋଷ୍ଠୀର ସୀମା ମଧ୍ୟରେ ! ଯନ୍ତ୍ର-ବିପ୍ଳବ ଯୁଗର ସୌଦାଗର-ମିସ୍ତ୍ରୀ ଗୋଷ୍ଠୀ ଓ ସେମାନଙ୍କ ସହିତ ସଂଶ୍ଳିଷ୍ଟ ମଧ୍ୟବିତ୍ତ ଗୋଷ୍ଠୀର ରୁଚି ଓ ମୂଲ୍ୟବୋଧକୁ ସାହିତ୍ୟ ନିଜର ଅନୁସାରୀ କରିଦେଲା । ପ୍ରାକ୍ ଉନବିଂଶ ଶତାବ୍ଦୀରେ ସାହିତ୍ୟ ଯେପରି ସମାଜର କେନ୍ଦ୍ରବିନ୍ଦୁ ହୋଇ ରହିଥିଲା ; ତା ଆଉ ସେପରି ହୋଇ ରହିପାରିଲା ନାହିଁ ! ସମାଜର ମୁଖ୍ୟ ପ୍ରବୃତ୍ତିର ଏହା ଆଉ ପ୍ରତିନିଧିତ୍ୱ କରି ପାରିଲା ନାହିଁ । ଏହି ପରିସ୍ଥିତିରେ ସମାଜ ଠାରୁ ସାହିତ୍ୟର ବିଚ୍ଛେଦ ଘଟିଲା ।

କ୍ରମେ ସାହିତ୍ୟର ସ୍ଥାନ ଅଧିକାର କଲେ ସାମ୍ବାଦିକ ଓ ମନୋରଞ୍ଜନ ଧର୍ମୀ ଲଘୁ-ଲେଖକ ଗୋଷ୍ଠୀ । ବିଦ୍ରୋହୀ ରୋମାଣ୍ଟିକ୍‌ମାନେ, ସୌଦାଗର-ମାନଙ୍କର ଅନ୍ତଃପୁରିକା ଅଥବା ସାହିତ୍ୟିକ ରୁଚିହୀନ ସାକ୍ଷର ଜନତାର ମନୋରଞ୍ଜନ ପାଇଁ ତେଲ-ଲୁଣ-ସଂସାରଚଳା 'ପଟ-ବଏଲର' ଲେଖି ବସିଲେ । ସାହିତ୍ୟ ମଧ୍ୟ ପରିଣତ ହୋଇ ଉଠିଲା, ତେଲ ଓ ଲୁଣ ପରି ପଣ୍ୟରେ ।

ଏହାର ପ୍ରତିବାଦ ଶୁଣାଯାଇଥିଲା ୟୁରୋପରେ—"ଆଇସ୍‌ଥେଟିକ୍ ମୁଭ୍‌ମେଣ୍ଟ" (Aesthetic movement) ମଧ୍ୟରେ । ଏହାର ସ୍ଲୋଗାନ୍ ଥିଲା··· Art for its own sake ! ଓସ୍କାର ଓ୍ୱାଇଲ୍‌ଡ଼ ଥିଲେ ଏହାର ପ୍ରବକ୍ତା । ସମାଜ ବିରୁଦ୍ଧରେ ଏହା ଥିଲା ସାହିତ୍ୟର ଚୂଡ଼ାନ୍ତ ଯୁଦ୍ଧ ଘୋଷଣା । ଭାରତରେ ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳର ସାହିତ୍ୟରେ ଏହି ଆତ୍ମମୁଖ୍ୟ ସ୍ପଷ୍ଟତର ହୋଇ, ବିଗତ ଷଷ୍ଠ ଦଶକଠାରୁ ସାହିତ୍ୟକୁ

କକ୍ଷଚ୍ୟୁତ ମାନବର ଏକ ମାନସିକ ବିକୃତିରେ ପରିଣତ କରି ଦେଇଅଛି ।
"ଆର୍ଟ ଫର୍ ଇଟ୍ସ ଓନ୍ ସେକ୍" ପରିଣତ ହୋଇଛି "ଆର୍ଟ ଫର୍ ଦି ସେକ୍ ଅଫ୍ ଆର୍ଟିଷ୍ଟ"ରେ ! ଅର୍ଥାତ୍ ସାହିତ୍ୟ କେବଳ ସାହିତ୍ୟ ପାଇଁ ଉଦ୍ଦିଷ୍ଟ ଥିବା ପର୍ଯ୍ୟାୟ ଅତିକ୍ରମ କରି ବର୍ତ୍ତମାନ ଆସି ପହଞ୍ଚିଛି "ସାହିତ୍ୟିକ ପାଇଁ ସାହିତ୍ୟ"ର ଅନ୍ଧଗଳି ମଧ୍ୟରେ ! ଏଥିରୁ ପରିତ୍ରାଣ ପାଇଁ ପୁଣି ଉଠିଲାଣି ସମାଜ ପ୍ରତି ସାହିତ୍ୟର ଦାୟିତ୍ୱବୋଧ ବା କମିଟ୍‌ମେଣ୍ଟ୍‌ର ସ୍ଲୋଗାନ । ଏ ସ୍ଲୋଗାନ୍ କିନ୍ତୁ ଶୁଦ୍ଧ ସାହିତ୍ୟରେ ରୂପାନ୍ତରିତ ନ ହେଲେ, ଏହାର କୌଣସି ସାହିତ୍ୟିକ ମୂଲ୍ୟ ରହିବ ନାହିଁ । ଏହା ପରିଣତ ହୋଇ ପଡ଼ିବ ରାଜନୈତିକ ପାମ୍ଫ୍‌ଲେଟିୟରଙ୍କ ଅଥବା ସାମ୍ବାଦିକ ରିପୋର୍ଟିଂରେ ।

(କଳିଙ୍ଗ ତା ୫ । ୨ । ୭୦)



# ମାଘ ସପ୍ତମୀ

ଅନାବିଷ୍କୃତ ଇତିହାସର ମୃତ ନଦୀ ପରି ସାରଳା-ମହାଭାରତ ବର୍ଣ୍ଣିତ 'ବୁଦ୍ଧାନଦୀ' (ବୁଡ଼ୀ ନଈ) ଆଜି ତେନ୍ତୁଳିପଦା ଗାଁ' ଠାରୁ ଅ ଦୂରରେ ଏକ ଦଳୁଆ ଯୋଡ଼ ! ଯୋଡ଼ କୂଳରେ କେଉଁ ଅନାଦିକାଳର ଗୋଟିଏ ବରଗଛ । କୋଡ଼ିଏ ପଚଶ ବର୍ଷ ପୂର୍ବେ ସେଠାରେ ଆମ୍ବ ତେନ୍ତୁଳିର ଗ୍ରୁପ୍ଟାନିବଡ଼ ତୋଟାଟିଏ ଥିଲା । ତୋଟା ଭିତରେ 'ମୁନି ଗୋସାଇଁ' ମଠ । ଆଦିକବି ସିଦ୍ଧ ସାରଳା ସେଇଠାରେ ସମାଧି ନେଇଥିଲେ । ସାରଳା ଦାସଙ୍କ ଐତିହାସିକ କାଳ ଆଜି ସୁଦ୍ଧା ନିର୍ଣ୍ଣିତ ହୋଇନାହିଁ । 'କଳିକାଳ ଧ୍ୱଂସନକୁ ଭୋଗ ଗୋଟି ପୂଜା, ଅପ୍ରମିତ ଖଟଇ କପିଳେଶ୍ୱର ମହାରାଜା' —ସାରଳା ମହାଭାରତରେ ଏହି ସଂକ୍ଷିପ୍ତ ଉଲ୍ଲେଖରୁ ଆଲୋଚକ ଓ ଗବେଷକମାନେ ତାଙ୍କୁ ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ରଙ୍କ ସମସାମୟିକରୂପେ ଅନୁମାନ କରିଥାନ୍ତି । କିନ୍ତୁ ସେ ସବୁ କେବଳ ଅନୁମାନ ମାତ୍ର । ସାରଳାଙ୍କ ଆବିର୍ଭାବ ଓ ତିରୋଭାବ ତିଥି ସମ୍ପର୍କରେ ମଧ୍ୟ ସେହିପରି କୌଣସି ପ୍ରମାଣ ନାହିଁ । ତଥାପି ପ୍ରତିବର୍ଷ ମାଘ ସପ୍ତମୀ ଦିନ ଶତ ଶତ ନରନାରୀ ବୁଡ଼ୀ ନଈର ଦଳୁଆ ପାଣିରେ ବୁଡ଼ ପକାଇ ସାରଳାଙ୍କ ସମାଧିପୀଠରେ ନୈବେଦ୍ୟ ସମ୍ଭାର ଧରି ଶ୍ରଦ୍ଧାଞ୍ଜଳି ନିବେଦନ କରିଥାନ୍ତି । ଏହି ଉପଲକ୍ଷ୍ୟରେ ସେଠାରେ ଗ୍ରେଟିଆ ମେଳାଟିଏ ବସେ । ଉତ୍ସବ-ମୁଖର ଏକ ଶୁଚିନିଷ୍ଠ ପରିବେଶ ମଧ୍ୟରେ ଗ୍ରାମାଞ୍ଚଳର ନରନାରୀ ସେମାନଙ୍କ ଆଦିକବିଙ୍କ ତିରୋଧାନ ମଧ୍ୟ ପାଳନ କରିଥାନ୍ତି ।

ସେଠାରୁ ଅଦୂରରେ 'କନକବଟି ପାଟଣା' କନକପୁର ଗ୍ରାମରେ କବିଙ୍କ ସାଧନାପୀଠ, ବାଗ୍‌ଦେବୀ ସାରଳା ଚଣ୍ଡୀଙ୍କ ମନ୍ଦିର । ଏହି ଉପ-ଲକ୍ଷ୍ୟରେ ସେଠାରେ ମଧ୍ୟ ବେଶ୍ ଯାତ୍ରୀ ଭିଡ଼ ହୋଇଥାଏ । ଆଜକୁ ଅନ୍ୟୂନ ଛଅଶହ ବର୍ଷ ପୂର୍ବେ ଦାଣ୍ଡୀ ବୃତ୍ତରେ ସାରଳା ମହାଭାରତ

ଯେପରି ପାଠ କରାଯାଉଥିଲା ଆଜି ସୁଦ୍ଧା ସେଠାରେ ପୁରାଣ ପଣ୍ଡାଙ୍କ ବୋଲିରେ ସେହି ସୁର, ବିଭିନ୍ନ ବିଷୟବସ୍ତୁର ବର୍ଣ୍ଣନା ବେଳେ ଠିକ୍ ସେହି ଭଙ୍ଗୀ ଲକ୍ଷ୍ୟ କରିହୁଏ । ···ଇଏ ଗଲା ଆଦିକବିଙ୍କ ଉଦ୍ଦେଶ୍ୟରେ ଗ୍ରାମୀଣ ଜନତାର ସ୍ମୃତି ତର୍ପଣ । ମାତ୍ର ବିଦଗ୍ଧ, ଶିକ୍ଷିତ ସମାଜର ସ୍ମୃତି-ତର୍ପଣର କାଯୃଦାଟା ଅଲଗା । ସ୍ମୃତି-ତର୍ପଣ ଉଦ୍ଦେଶ୍ୟରେ ଗଠିତ ହୋଇଛି ଦୁଇ ସମାନ୍ତରାଳ ସଂସ୍ଥା ! ଦୁଇ ସଂସ୍ଥା ପକ୍ଷରୁ ପ୍ରତିବର୍ଷ ସମାଧି-ପୀଠରେ ଆୟୋଜିତ ହୁଏ ଦୁଇଟି ସମାନ୍ତରାଳ ସଭା । ମାଇକ୍ରୋଫୋନ ଆସେ ଅଲଗା ଅଲଗା । ମଞ୍ଚ ମଧ୍ୟ ସ୍ୱତନ୍ତ୍ର । ସେହିପରି ମଧ୍ୟ ଆମନ୍ତ୍ରିତ ଉଭୟ ଗୋଷ୍ଠୀର ଉଦ୍ୟୋକ୍ତାଙ୍କ ପକ୍ଷରୁ ସ୍ୱତନ୍ତ୍ର ମୁଖ୍ୟ ଅତିଥି । ମୁଖ୍ୟବକ୍ତା, ସଭାପତି ଓ ଉଦ୍‌ଘାଟକ । ସାଧନା ପୀଠରେ କିନ୍ତୁ ଗୋଟିଏ ଗୋଷ୍ଠୀ ପକ୍ଷରୁ କେବଳ ସ୍ମୃତି ସଭାଟିଏ ଆୟୋଜିତ ହୁଏ । ଅପରପକ୍ଷ ସେଠାକୁ ଆସନ୍ତି ନାହିଁ ; ବୋଧହୁଏ ବିଶେଷ ରାଜନୈତିକ ସମର୍ଥନ ନ ଥିବା କାରଣରୁ । ଇଏ ହେଲା ଶିକ୍ଷିତ-ଗୋଷ୍ଠୀର ମାଘ ସପ୍ତମୀ । ସାହିତ୍ୟ-ଲେଶହୀନ ଗ୍ରାମୀଣ ଜନତାର ସ୍ମୃତି ତର୍ପଣରେ ଅନ୍ତରର ଶ୍ରଦ୍ଧା, ଶୁଚିନିଷ୍ଠ ଓ ସଂପ୍ରୀତି ; ମାତ୍ର ସାହିତ୍ୟ-ରସ-ସ୍ନିଗ୍ଧ ଶିକ୍ଷିତ ସମାଜର ସ୍ମୃତି ନିବେଦନରେ ରାଜନୈତିକ ବିବାଦ, ବିଦ୍ୱେଷ ଓ ଅହଙ୍କାର ।

ଏଇ ମାଘ ସପ୍ତମୀ ପୁଣି ଆଳଙ୍କାରିକ କାବ୍ୟ ଯୁଗର ଶେଷ ଉଜ୍ଜ୍ୱଳ ପ୍ରତିନିଧି ଅଭିମନ୍ୟୁ ସାମନ୍ତସିଂହାରଙ୍କ ଆବିର୍ଭାବ ତିଥି । ଆଳଂକାରିକ କାବ୍ୟର ଶତ କ୍ଲିଷ୍ଟତା ସତ୍ତ୍ୱେ ମଧ୍ୟଯୁଗୀୟ ଆଳଂକାରିକ କାବ୍ୟ ସବୁ ଜନସମାଜର ପ୍ରାଣକୁ ଯେପରି ସ୍ପର୍ଶ କରିଥିଲା, ଆଜି ସୁଦ୍ଧା ତାହାର ପ୍ରମାଣ ମିଳେ । ବାଲିଆ ଅଞ୍ଚଳର ଅଗଣିତ ନରନାରୀ ଏହି ଦିନଟିକୁ ଏକ ପୁଣ୍ୟ ଦିବସରୂପେ ପାଳନ କରିବାରେ, ସେଦିନ ସେ ଅଞ୍ଚଳରେ ସମସ୍ତେ ସବୁ କାମ ବନ୍ଦ ରଖି ପୁଷ୍ପ ଓ ନୈବେଦ୍ୟ ସମ୍ଭାର ନେଇ ଆସିଥାନ୍ତି କବିଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧା ନିବେଦନ ପାଇଁ । ଭାଗବତ ରଚୟିତା ଅତିବଡ଼ି ଜଗନ୍ନାଥ ଦାସଙ୍କ ତିରୋଧାନ ସହିତ ମଧ୍ୟ ଏହି ମାଘ ସପ୍ତମୀ ଜଡ଼ିତ । ପରମ୍ପରା ଅନୁସାରେ ଖ୍ରିଷ୍ଟ ଯୁଗର ଶେଷ କବି, କବିସୂର୍ଯ୍ୟ ବଳଦେବ ରଥଙ୍କର ତିରୋଧାନ ମଧ୍ୟ ୧୮୪୧ ଖ୍ରୀଷ୍ଟାବ୍ଦ ମାଘ ସପ୍ତମୀ ଦିନ ଘଟିଥିଲା ।

ମାଘ ସପ୍ତମୀ ଏହିପରି ଭାବରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଏକ ପ୍ରବାହମାନ ପ୍ରାଣଚଞ୍ଚଳ ଧାରା । ଏହି ତିଥିଟି ବିଭିନ୍ନ କବିଙ୍କ ଉଦ୍ଦେଶ୍ୟରେ ସ୍ମୃତି ତର୍ପଣର ଏକ ପୁଣ୍ୟାହ ରୂପେ ପରିଗଣିତ ହେଉଅଛି । କବିମାନେ ନିଜ ନିଜର ସ୍ମୃତିରକ୍ଷା ପାଇଁ କିନ୍ତୁ କୌଣସି ଟ୍ରେଲରିସ ପ୍ରସ୍ତୁତ କରାଇ ଯାଇ ନ ଥିଲେ ; ନିଜର ସ୍ମରଣିକା ପାଇଁ 'ମାଗି ଓଲଙ୍କ ପାଞ କଲ୍ୟାଣ' ନ୍ୟାୟରେ ଲେଖା ସଂଗ୍ରହ କରି ନ ଥିଲେ, ପ୍ରଚ୍ଛଦକମଣ୍ଡଳୀ ଗଠନ କରି ନ ଥିଲେ କିମ୍ବା ନିଜ କୃତି ଓ କୀର୍ତ୍ତିର ପ୍ରଜ୍ଞାପନ ଛପାଇ ନ ଥିଲେ । ତଥାପି ଓଡ଼ିଆ ଜାତିର ଅବଚେତନରେ ସେମାନେ ଚିରଞ୍ଜୀବନ୍ତ । କିନ୍ତୁ ସେଦିନର କବି ଓ ଲେଖକମାନଙ୍କ ସହିତ ଗ୍ରାମୀଣ ସମାଜ ଯଦି ଏପରି ନିବିଡ଼ ଅନ୍ତରଙ୍ଗତା ସ୍ଥାପନ କରିପାରିଥିଲା, ଆଜି ସାହିତ୍ୟର ଏଇ ବର୍ଦ୍ଧମାନ କାଳରେ ସାହିତ୍ୟ ଓ ସମାଜ ମଧ୍ୟରେ ଏ କକ୍ଷଚ୍ୟୁତି କାହିଁକି ? କବିର ସ୍ମୃତି-ତର୍ପଣରେ ସମାଜ ଆଉ ଉତ୍ସବ ଉଦ୍‌ବେଳ ହୁଏ ନାହିଁ କାହିଁକି ? ଏହାର କାରଣ ସାହିତ୍ୟ ଆଉ ସାର୍ବଜନୀନ ( Public ) ହୋଇ ରହି ନାହିଁ । ଏହା ପରିଣତ ହୋଇଛି ଏକ ନିତାନ୍ତ ବ୍ୟକ୍ତିଗତ ବ୍ୟକ୍ତିପ୍ରଧାନ ( Personal ) ଅଭିବ୍ୟକ୍ତିରେ । ଏହା ଫଳରେ ସାହିତ୍ୟ ସମାଜ ମଧ୍ୟରେ ଯେଉଁ ବିଚ୍ଛେଦ ଘଟିଛି, ସେଥିରେ ଆଧୁନିକ ଓ ଅତ୍ୟାଧୁନିକ ସାହିତ୍ୟର ମାଘ-ସପ୍ତମୀ ଆଉ ସମ୍ଭବ ନୁହେଁ ।

( କଳିଙ୍ଗ ତା ୧୫ । ୨ । ୭୦ )



# ମାଂସପେଶୀ ଓ ମହାକାବ୍ୟ

ସାହିତ୍ୟ ସହିତ ରାଜନୀତିର ପ୍ରତ୍ୟକ୍ଷ ସମ୍ପର୍କ ଆପାତ ଦୃଷ୍ଟିରେ ଦୃଶ୍ୟତ ନାହିଁ; ମାତ୍ର ରାଜନୈତିକ ଘୂର୍ଣ୍ଣି ଓ ସମାଜ ବିପ୍ଳବ ମଧ୍ୟରୁ କାଳୋତ୍ତୀର୍ଣ୍ଣ ସାହିତ୍ୟର ସୃଷ୍ଟି ଯୁଗେ ଯୁଗେ ସମ୍ଭବ ହୋଇ ପାରିଅଛି। ବସ୍ତୁତଃ ଇଂରାଜୀ ରୋମାଣ୍ଟିକ୍ କବିତା, ଫରାସୀ ବିପ୍ଳବର ସନ୍ତାନ— ଏ କଥା ଇଂରାଜୀ ସାହିତ୍ୟର ସମାଲୋଚକମାନେ ଅସ୍ୱୀକାର କରନ୍ତି ନାହିଁ। ଓ୍ୱାର୍ଡ୍‌ସଓ୍ୱାର୍ଥଙ୍କ କବିତା, ଫରାସୀ ବିପ୍ଳବ ଦ୍ୱାରା ଗଭୀର ଭାବରେ ଅନୁପ୍ରେରିତ ହୋଇଥିଲା, ଯଦ୍ୟପି, ପରବର୍ତ୍ତୀ କାଳରେ, ଫରାସୀ ବିପ୍ଳବର ପରିଣତିରେ ବୀତଶ୍ରଦ୍ଧ ହୋଇ ପ୍ରକୃତି ବା 'ନେଚର' ପ୍ରତି କବି ଅଧିକତର ଭାବରେ ଆକୃଷ୍ଟ ହୋଇଥିଲେ। ମାତ୍ର ପ୍ରକୃତି ପ୍ରତି କବିଙ୍କର ସେହି ଆକର୍ଷଣ ମଧ୍ୟରେ ସୁଦ୍ଧା ଥିଲା ଗତାନୁଗତିକ ଓ ପାରମ୍ପରିକ ବିରୁଦ୍ଧରେ ନିଷ୍ପନ୍ଦ ବିଦ୍ରୋହ ! ଶେଲିଙ୍କ କାବ୍ୟ ସାହିତ୍ୟରେ ମଧ୍ୟ ବିପ୍ଳବର ସେହି ପ୍ରେରଣା ଅସ୍ପଷ୍ଟ ନୁହେଁ ! ଚିରନ୍ତନ ବିପ୍ଳବର କବି ବାୟୁରନଙ୍କ କବିତାରେ ଏହା ଯେପରି ଏକ ଆଗ୍ନେୟ ଆହ୍ୱାନରେ ପରିଣତ ହୋଇଅଛି...”

Eternal Spirit of the
Chainless minds.
Brightest in dungeons
Liberty than art.”

ସ୍ୱାଧୀନତା ପାଇଁ ଭାରତର ଜାତୀୟ ସଂଗ୍ରାମ ବେଳେ ମଧ୍ୟ, ଊଣା ଅଧିକେ ସବୁ ଭାରତୀୟ ସାହିତ୍ୟରେ ଏକ ଉଜ୍ଜୀବନ ଦେଖା ଦେଇଥିଲା ଓ ନାନା ଭାବରେ ଭାରତୀୟ ସାହିତ୍ୟର ଦିଗ୍‌ବଳୟକୁ ଏହା ଯେ ସଂପ୍ରସାରିତ କରିଥିଲା, ସେଥିରେ ସନ୍ଦେହ ନାହିଁ।

ଆଜି କିନ୍ତୁ ଭାରତୀୟ ସମାଜର କୋଣେ କୋଣେ ପ୍ରବଳ ଅଶାନ୍ତି । 'ଅଥରିଟି' ଓ 'ଏଷ୍ଟାବ୍ଲିସ୍‌ମେଣ୍ଟ' ବିରୁଦ୍ଧରେ ବେଗେ ବେଗେ ବିଦ୍ରୋହର ରଣଭେରୀ । ଗତାୟୁ ସମାଜର ନବକଳେବର ପାଇଁ ସର୍ବତ୍ର ସାଜ ସାଜ ରବ । ହୃଦୟର ନିରୁଦ୍ଧ ଝଡ଼ ବିସ୍ଫୋରଣ କରିଉଠୁଛି, ମହାନଗରୀର ରାଜ-ପଥ ଠାରୁ ଗ୍ରାମାଞ୍ଚଳର କୃଷି କ୍ଷେତ୍ର ଓ ଦୁର୍ଗମ ଅରଣ୍ୟ ପର୍ଯ୍ୟନ୍ତ । କିନ୍ତୁ ଭାରତୀୟ ସାହିତ୍ୟକୁ ଏହା ଉଜ୍ଜୀବିତ କରିପାରୁ ନାହିଁ କାହିଁକି ? ଆଜିର ବୈପ୍ଳବିକ ପରିସ୍ଥିତି, ଭାରତୀୟ ସାହିତ୍ୟରେ ନୂତନ ଦିଗ୍‌ବଳୟ ସମ୍ପ୍ର-ସାରିତ କରିବା ପରିବର୍ତ୍ତେ, ଏହାକୁ ଯୌନତା, ମନ ସମୀକ୍ଷା, ସ୍ଥିତିବାଦୀ ନୈରାଶ୍ୟ, ଶୂନ୍ୟତା ଓ କକ୍ଷଚ୍ୟୁତିର ବଦ୍ଧ-ପଲ୍ୱଲରେ ପରିଣତ କରୁଛି କାହିଁକି ? ପ୍ରତ୍ୟେକ ସୃଷ୍ଟିଧର୍ମୀ ଲେଖକ ଓ ସମାଜତାତ୍ତ୍ୱିକ ଅନାସକ୍ତ ଭାବରେ ଏହାର ଉତ୍ତର ଚିନ୍ତା କରିବା ଆବଶ୍ୟକ ।

ସ୍ଥୂଳତଃ ଆଜିର ସାଂପ୍ରତିକ-ସାହିତ୍ୟରେ ଯେଉଁ ପ୍ରବୃତ୍ତି ଅଧିକତର ଭାବରେ ସୁସ୍ପଷ୍ଟ, ତାହା ହେଲା ଆତ୍ମକୈନ୍ଦ୍ରିକ ବେଦନା ଓ ବ୍ୟର୍ଥତାର ଅତିରଞ୍ଜିତ ଚିତ୍ରଣ, ଗ୍ଳାନିର ଆର୍ତ୍ତନାଦ, କୁଣ୍ଠିତ ଆସ୍ଫାଳନ ଓ ବିଦ୍ରୋହର ଉତ୍ତେଜନା । ଏ ବିଦ୍ରୋହର ପରିପ୍ରକାଶ ପୁଣି ଶେଲି ବା ବାୟୁରନଙ୍କ କବିତା ପରି କୌଣସି ସ୍ମରଣୀୟ କବିତାରେ ନୁହେଁ—ଉଲଙ୍ଗ ଯୌନତାରେ ।

ବସ୍ତୁତଃ କେବଳ ସାଂପ୍ରତିକ ଓଡ଼ିଆ ସାହିତ୍ୟ ଅଥବା ଭାରତୀୟ ସାହିତ୍ୟରେ ନୁହେଁ, ପାଶ୍ଚାତ୍ୟରେ ମଧ୍ୟ ଏହି ବିଳୟ ଓ ବିକୃତି ସମାଲୋଚକମାନଙ୍କ ଦୃଷ୍ଟିରୁ ବାଦ ଯାଇ ନାହିଁ । 'ଟାଇମ୍' ପତ୍ରିକା ( ୧୮।୫।୭୦ ) ସାଂପ୍ରତିକ ସାହିତ୍ୟ ସମ୍ପର୍କରେ ଲେଖିଛନ୍ତି···

"It is significant that this generation of dissentus has failed to produce a literature, or a polemic is likely to endure." ( ଏ ଯୁଗର ବିଦ୍ରୋହୀମାନେ କୌଣସି କାଳଜୟୀ ସାହିତ୍ୟ ସୃଷ୍ଟି କରିପାରି ନାହାନ୍ତି । )

କିନ୍ତୁ ଇତିହାସର ପୃଷ୍ଠା ଓଲଟାଇଲେ ଦେଖାଯାଏ, ବିଦ୍ରୋହ ଓ ବିପ୍ଳବ କାଳେକାଳେ କଥିତ ଓ ଲିଖିତ ଶବ୍ଦ ମଧ୍ୟରେ ହିଁ ଅଧିକତର

ଭାବରେ ପ୍ରକାଶ ପାଇ ଆସିଅଛି । ଫରାସୀ ବିପ୍ଳବ ଓ ଆମେରିକାର ସ୍ୱାଧୀନତା ସମର ଠାରୁ ଆରମ୍ଭ କରି ସୋଭିଏତ ବିପ୍ଳବ ଓ ଭାରତ ମୁକ୍ତିସଂଗ୍ରାମ ପର୍ଯ୍ୟନ୍ତ, ସବୁ ସଂଗ୍ରାମ, ସଂଘର୍ଷ ଓ ରାଷ୍ଟ୍ରବିପ୍ଳବ ମଧ୍ୟରେ ଏହାର ସତ୍ୟତା ପ୍ରମାଣିତ ହୋଇଥାଏ । ତା' ହେଲେ ଆଜିର ବିପ୍ଳବ ମୂକ କାହିଁକି ?

ମାର୍ଶାଲ୍ ମାକଲୁହନ ନାମଧେୟ ଜଣେ ସମାଜତାତ୍ତ୍ୱିକ, ଏହାର ଗୋଟିଏ ଉତ୍ତର ଦେଇ କହିଛନ୍ତି—ଆଜିର ସମାଜରେ ଶବ୍ଦ ଅପେକ୍ଷା ଛବିର ପ୍ରଭାବ ବେଶୀ । ପ୍ରାଗ୍‌ଐତିହାସିକ ଟ୍ରାଇବାଲ୍ ସମାଜରେ ଶବ୍ଦ ଓ ସଙ୍କେତ ମନୁଷ୍ୟକୁ ଗଭୀରତର ଭାବରେ ଆଲୋଡ଼ିତ କରୁଥିଲା, ସାଂପ୍ରତିକ ସମାଜର ଚେତନା ଏହି ଛବି ଓ ସଙ୍କେତ ମାଧ୍ୟମରେ ସେହିପରି ଆଲୋଡ଼ିତ ହୋଇପାରୁଛି । ଏଥିପାଇଁ "ଫିଲ୍ମ" ଆଜି ସାହିତ୍ୟର ସ୍ଥାନ ଅଧିକାର କରୁଛି ଓ "ପପ୍-ଆର୍ଟ," "ଭିଜୁଆଲ୍ ଆର୍ଟ" ପ୍ରଭୃତିର ଉତ୍ପତ୍ତି ଏଇଠାରେ । ଏ ଯୁଗର ଅନ୍ୟତମ ଚିନ୍ତକ ହରବର୍ଟ ମାର୍କ୍ୟୁସ୍‌ଙ୍କ ମତରେ, ଆଜି ଟେକ୍‌ନୋଲଜିକାଲ ସମାଜରେ କ୍ଷମତା ବା 'ପାୱାର' ମୁଷ୍ଟିମେୟ କେତେକଙ୍କଠାରେ କେନ୍ଦ୍ରୀଭୂତ ହୋଇ ରହିଥିବାରୁ 'ଶବ୍ଦ'ର ସେ ସାର୍ବଭୌମତ୍ୱ ଆଉ ରହି ନାହିଁ । ଲିଖିତ ଓ କଥିତ ଶବ୍ଦ ପ୍ରତି ଏ ଅନାଦର ହେତୁ, ଶୃଙ୍ଖଳିତ ଚିନ୍ତା ଓ ତାହାର ପରିପ୍ରକାଶ କାର୍ଯ୍ୟତଃ ଅବାନ୍ତର ହୋଇପଡ଼ୁଛି । ଆଜିର ସମାଜ-ବିପ୍ଳବ ତେଣୁ ସ୍ମରଣୀୟ ସାହିତ୍ୟ ପରିବର୍ତ୍ତେ ସୃଷ୍ଟି କରୁଛି ଗଣ୍ଡା ଗଣ୍ଡା ହାତବୋମା ଆଉ "ମଲୋଟୋଭ୍ କକ୍‌ଟେଲ୍" । ଏହା ଫଳରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ବୌଦ୍ଧିକ ସମ୍ପର୍କ କେବଳ ଯେ ବିଚ୍ଛିନ୍ନ ହୋଇପଡ଼ୁଛି ତାହା ନୁହେଁ ; ତାହା ସହିତ ମଧ୍ୟ ବିଦାୟ ନେଇଚି ଯୁକ୍ତିନିଷ୍ଠ ଚିନ୍ତା । 'ଭାଇଓଲେନ୍‌ସ' ଏ ପରିସ୍ଥିତିରେ ଅତି ସ୍ୱାଭାବିକ ଭାବରେ, ସମାଜର ଏକମାତ୍ର ଆଭିମୁଖ୍ୟ ହୋଇପଡ଼ୁଛି । ଆମେରିକାର ସମାଜତାତ୍ତ୍ୱିକମାନେ ଏହାର ନାମକରଣ କଲେଣି···"Body Rhetoric"···ମାଂସପେଶୀର କାବ୍ୟ ।



# ପାରମ୍ପରିକ ଓ ସାଂପ୍ରତିକ

ଗତବର୍ଷ ପୂଜାସଂଖ୍ୟା 'କଳଙ୍ଗ'ରେ ମୋର ଗୋଟିଏ କ୍ଷୁଦ୍ରଗଳ୍ପ ପ୍ରକାଶ ପାଇଥିଲା "କମନ୍‌ରୁମ୍"। ଗଳ୍ପଟି ପ୍ରକୃତଗଳ୍ପ ବା ଆଣ୍ଟିଷ୍ଟୋରି ପର୍ଯ୍ୟାୟର। (କୌତୂହଳୀ ପାଠମାନେ ଗଳ୍ପଟିକୁ 'କଳଙ୍ଗ'ର ପୂଜାସଂଖ୍ୟାରେ ଦେଖି-ପାରନ୍ତି।) ଏ ଗଳ୍ପଟି ଯେଉଁମାନଙ୍କୁ ଭଲ ଲାଗିଥିଲା, ସେମାନେ ସୁଦ୍ଧା ଏହାର ସମାପ୍ତିରେ ନୈରାଶ୍ୟ ପ୍ରକାଶ କରିଥିଲେ। ଗଳ୍ପଟିର ପରିସମା-ପ୍ତିରେ ଥିଲା ଏପରି ଏକ ଭାବପ୍ରବଣତା (ବଙ୍ଗଳାରେ ଯାହାକୁ କୁହାଯାଏ ନ୍ୟାକାମି) ଯାହା ଗଳ୍ପର 'ମୁଡ୍' ବା ମେଜାଜ୍ ସହିତ ଆଦୌ ଖାପ ଖାଉ ନ ଥିଲା। ଗଳ୍ପଟି ବିଗତ ଦଶକରେ ଲେଖା ଯାଇଥିଲେ, ଏହାର ପରିସମାପ୍ତିରେ ଯେ 'ଏନ୍‌କୋର' ପଡ଼ିଥାନ୍ତା, ସନ୍ଦେହ ନାହିଁ। ମାତ୍ର ଚଳନ୍ତ ଦଶକରେ ତାହା ଅଚଳ···

"ମୃଦୁଳା କହିଲା—ମୋତେ କ୍ଷମା କର ମନୋଜ; ମୁଁ ତୁମକୁ ଅଯଥା ଅପମାନ କରିଛି।"

× × ×

ମୃଦୁଳା ହଠାତ୍ ପଚାରିଲା···"ତୁମେ ପ୍ରେମରେ ବିଶ୍ୱାସ କର ମନୋଜ?" କଣ୍ଠରେ ତାର ନବବଧୂର ସଲ୍ଲଜତା।"

ଏସବୁ ପାରମ୍ପରିକ ଗଳ୍ପରେ ହୁଏତ ଚଳନ୍ତା। ମାତ୍ର ଅଣ୍ଟିଷ୍ଟୋରିରେ ଏହା ଯେପରି ଖାପଛଡ଼ା, ଆଲୋଚିତ ଗଳ୍ପ ସମ୍ପର୍କରେ ବିଶିଷ୍ଟ ପାଠକ-ମାନଙ୍କର ପ୍ରତିକ୍ରିୟାରୁ ତାହା ସୁସ୍ପଷ୍ଟ ହୋଇଥିଲା। ଆଜିର 'ନିରୋଧ'। ଟେକ୍ନୋକ୍ରାସୀ ଓ ନାରୀ ସ୍ୱାଧୀନତା ଯୁଗରେ ରୋମାଣ୍ଟିକ୍ ପ୍ରେମ ଯେ ନିତାନ୍ତ ଅନ୍‌ରୋମାଣ୍ଟିକ୍ ହୋଇ ପଡ଼ିଛି, ସେଥିରେ ସନ୍ଦେହ ନାହିଁ। ବସ୍ତୁତଃ

ବୈଷ୍ଣବ କାବ୍ୟ ଓ ପଦାବଳୀ ଯୁଗରୁ ଏ ପର୍ଯ୍ୟନ୍ତ ପ୍ରେମ ବରଦ୍ଧର ନାକକାନ୍ଦଣା, ସାହିତ୍ୟର ଏକମାତ୍ର ଉପଜୀବ୍ୟ ରୂପେ ଯେପରି ରହି ଆସିଲା—ସେଥିରେ ପ୍ରେମ ସମ୍ପର୍କରେ ଏହିପରି ଏକ ପ୍ରତିକ୍ରିୟା ପ୍ରକାଶ ପାଇବା ସ୍ୱାଭାବିକ । ସାଂପ୍ରତିକ ସାହିତ୍ୟରେ ତେଣୁ ରୋମାଣ୍ଟିକ୍ ପ୍ରେମର ସ୍ଥାନ ପୂରଣ କରୁଛି ଅଶାନ୍ତ, ଅନାବୃତ ଯୌନଲପ୍‌ସା ଓ ସ୍ଥୂଳ ବିଶେଷରେ ତାହାର ବିକୃତି । ଆଜିର ବୈପ୍ଳବିକ ମେଜାଜ୍ ଓ ପରିସ୍ଥିତିରେ ପୁଣି ପ୍ରେମର କୌଣସି ସ୍ଥାନ ନାହିଁ—ମାନବୀୟ ବ୍ୟକ୍ତିଗତ ଜୀବନରେ ହେଉ ବା ନ ହେଉ, ସାହିତ୍ୟରେ ଅନ୍ତତଃ । ପ୍ରକୃତ ପକ୍ଷେ ଆଜିର ସଂଗ୍ରାମ, ସଂଘର୍ଷ ମଧ୍ୟରେ କୃଷିସର୍ବସ୍ୱ ପଲ୍ଲୀସମାଜର ସେ ନିଭୃତ ପ୍ରେମ ଓ ତାହାର ପୁଲକାଶ୍ରୁ କାହିଁ ? ସେଥିପାଇଁ ପ୍ରେମର ସେପରି ପାରମ୍ପରିକ ପରିପ୍ରକାଶ, ସାଂପ୍ରତିକ ପାଠକକୁ 'ବୋରିଙ୍ଗ୍' ଲାଗିବା ସ୍ୱାଭାବିକ । ବାସ୍ତବତା ଦୃଷ୍ଟିରୁ ପୁଣି, ବିଚାର କରି ଦେଖିଲେ, 'ମନୋଜ' ଓ 'ମୃଦୁଲା'ମାନଙ୍କ ପରି ତରୁଣ ତରୁଣୀଙ୍କଠାରେ ଆଜି କଣ ପ୍ରେମର ସେପରି ଆବେଦନ ଆଉ ରହିଛି ?

ଏ ପ୍ରଶ୍ନଟି ତଥାପି ଅସମାଧିତ ରହିଥିବାବେଳେ, ସିଂହଭୂମିରେ ଯଦୁଗୁଡ଼ା ଅରଣ୍ୟରେ ପୁଲିସଧୃତା ନକ୍‌ସଲ୍‌ପନ୍ଥିନୀ ବ୍ରିଟିଶ୍ ମହିଳା ମିସ୍ ମାରି ଟେଇଲର୍‌ଙ୍କ ରହସ୍ୟମୟ ଜୀବନ ସମ୍ପର୍କରେ କିଛି କିଛି ତଥ୍ୟ ଖବର କାଗଜରେ ଅନାବୃତ ହୋଇଛି । ସୁଦୂର ଇଂଲଣ୍ଡରୁ କୁମାରୀ ଟେଇଲର୍ ଭାରତ ଆସିଥିଲେ, ବାଗ୍‌ଦତ୍ତପ୍ରଣୟୀ ଅମଳେନ୍ଦୁଙ୍କ ସହିତ ମିଳନ ପାଇଁ । ମାତ୍ର ଅମଳେନ୍ଦୁ ସେତେବେଳକୁ ରୂପାନ୍ତରିତ, ନକ୍‌ସଲପନ୍ଥୀ ସନ୍ତ୍ରାସବାଦୀରେ—ବ୍ୟାଙ୍କ୍ ଡକାୟତି ମାମଲାରେ ପଳାତକ । ମାରି ଟେଇଲର୍ ହେଲେ ସେହି ଭୟଙ୍କର ପଥରେ ପ୍ରଣୟୀ ଅମଳେନ୍ଦୁର ଅନୁଗାମିନୀ ! ତାପରେ ଘାଟଶୀଳାର ଯଦୁଗୁଡ଼ା ଅରଣ୍ୟ···ପୋଲିସ୍ ସହିତ ସଂଘର୍ଷ ଓ ଅବଶେଷରେ କାରାବନ୍ଧନ ।

ଏମାନଙ୍କ ଜୀବନ କାହାଣୀ ଆଜି ଉତ୍କଟ ଭାବରେ ସାଂପ୍ରତିକ । ପୁଣି ଅମଳେନ୍ଦୁ ଓ ଟେଇଲର୍ ପରି ଚରିତ୍ର ନିଶ୍ଚୟ ଆଣ୍ଟି-ହିରୋ ଓ ଆଣ୍ଟି-ହିରୋଇନ୍‌ର ପର୍ଯ୍ୟାୟର । ମାତ୍ର ଏହି କାହାଣୀକୁ ଲିପିବଦ୍ଧ କଲେ, ତାହା

ଏକ ପାରମ୍ପରିକ ଗଳ୍ପ ବ୍ୟତୀତ ଅନ୍ୟ କିଛି ହୋଇପାରିବ କି ? ଯଦୁଗୁଡ଼ା ଅରଣ୍ୟର କେଉଁ ବନଗୁଳ୍ମ-ପ୍ରଚ୍ଛାଦିତ ଶାଳବୀଥିକାରେ ଟେଇଲର୍ କ'ଣ ପଡ଼ିର ନ ଥିବ···

"ତୁମେ ପ୍ରେମରେ ବିଶ୍ୱାସ କର ଅମଳେନ୍ଦୁ ?"

ପ୍ରବୃତ୍ତି ଦୃଷ୍ଟିରୁ ପାରମ୍ପରିକ ଓ ସାଂପ୍ରତିକ ମଧ୍ୟରେ ତେଣୁ ପ୍ରଭେଦ କେଉଁଠି ?

(କଳିଙ୍ଗ—ତା ୭ । ୬ । ୭୦)



# ଡିକେନ୍ସ ଶତବାର୍ଷିକୀ

ଚଳିତବର୍ଷ ବ୍ରିଟେନ୍‌ରେ ଔପନ୍ୟାସିକ ଚାର୍ଲସ ଡିକେନ୍‌ସଙ୍କ ଶତବାର୍ଷିକୀ ପାଳିତ ହେଉଛି । (କେଣ୍ଟଠାରେ ୧୮୭୦ ସାଲ ଜୁନ୍ ୯ ତାରିଖଦିନ ଚାର୍ଲସ ଡିକେନ୍‌ସଙ୍କ ପରଲୋକ ଘଟିଥିଲା ।) ଏହି ବିଗତ ଶତାବ୍ଦୀ ମଧ୍ୟରେ ବ୍ରିଟେନ୍‌ର ସାମାଜିକ, ବୌଦ୍ଧିକ ଓ ନୈତିକ ଜୀବନରେ ବହୁ ପରିବର୍ତ୍ତନ ଘଟିଯାଇଛି । ଚାର୍ଲସ୍ ଡିକେନ୍‌ସଙ୍କ ଉପନ୍ୟାସମାନଙ୍କରେ ବର୍ଣ୍ଣିତ ଲଣ୍ଡନ ରାସ୍ତାରେ ଯୋଡ଼ିଟଣା ଘୋଡ଼ାଗାଡ଼ି ପରିବର୍ତ୍ତେ ଆସିଲାଣି ନୂଆ ନୂଆ ମଡ଼େଲ୍‌ର ମୋଟରଗାଡ଼ି, ପୁରୁଣା ଶିଉଳିବସା 'କଟେଜ'ମାନଙ୍କ ସ୍ଥାନରେ ମୁଣ୍ଡ ଟେକି ଉଠିଲାଣି ନୂଆ ନୂଆ ସ୍କାଇସ୍କ୍ରାପର୍, ନାରୀମାନଙ୍କ ପରିଧାନରେ ପାଦଲୁଗ୍ନ ଗାଉନ୍‌ମାନ ଉପରକୁ ଉଠି ଉଠି "ମିନି ସ୍କାର୍ଟ"ରେ ଆସି ଅଣ୍ଟାତଳେ ରହିଲାଣି । ଇଂରେଜୀ ଉପନ୍ୟାସର ବିବର୍ତ୍ତନରେ ମଧ୍ୟ ଇତି ମଧ୍ୟରେ ସେହି ସ୍ତରରେ କମ୍ ମୋଡ଼ ବୁଲିନାହିଁ । ଉପନ୍ୟାସ କ୍ରମେ ଆସି ପହଞ୍ଚିଲାଣି "ଆଣ୍ଟି-ଉପନ୍ୟାସ"ରେ । ଏସବୁ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟରେ ସୁଦ୍ଧା, ବ୍ରିଟିଶ୍ ପାଠକ ସମାଜରେ ଡିକେନ୍‌ସଙ୍କ ଉପନ୍ୟାସ ଯେପରି ଏକ ଶ୍ରଦ୍ଧାସ୍ନିଗ୍ଧ ସ୍ଥାନ ଅଧିକାର କରି ରହିଛି—ଡିକେନ୍‌ସଙ୍କ ଶତବାର୍ଷିକୀ ପାଳନରୁ ତାହା ବେଶ୍ ସୂଚିତ ହୋଇଥାଏ । ସମ୍ଭବତଃ ସେକ୍‌ସପିୟରଙ୍କ ବ୍ୟତୀତ, ବ୍ରିଟେନ୍‌ରେ ଅନ୍ୟ କୌଣସି ଲେଖକ ଏପରି ଶ୍ରଦ୍ଧା, ସମ୍ମାନ ଓ ସ୍ୱୀକୃତିର ଅଧିକାରୀ ହୋଇପାରି ନାହାନ୍ତି । ବସ୍ତୁତଃ ଚରିତ୍ର ସୃଷ୍ଟିରେ ଚାର୍ଲସ୍ ଡିକେନ୍‌ସ ନାଟ୍ୟକାର ସେକ୍‌ସପିୟରଙ୍କ ପରି ଅବିସ୍ମରଣୀୟ । ଡିକେନ୍‌ସଙ୍କ ଉପନ୍ୟାସର ମିକାବର୍ (Micawber) ଓ ପେକ୍‌ସ୍ନିଫ୍ (Pecksniff) ପରି ବହୁ କାଳ୍ପନିକ ଚରିତ୍ର, ଐତିହାସିକ ଚରିତ୍ରମାନଙ୍କଠାରୁ ବରଂ ସୁଦ୍ଧା ଅଧିକ ଜୀବନ୍ତ ଓ ସ୍ମରଣୀୟ ହୋଇ ପାରିଅଛନ୍ତି । ସ୍ମରଣୀୟ ଚରିତ୍ର ସୃଷ୍ଟିରେ ବିସ୍ମୟୋଦ୍ଦୀପକ ସଫଳତା ଚାର୍ଲସ ଡିକେନ୍‌ସ ଉପନ୍ୟାସଗୁଡ଼ିକୁ କାଳୋତ୍ତୀର୍ଣ୍ଣ କରି ପାରିଅଛି । ବସ୍ତୁତଃ

ସେକ୍‌ସପିୟରଙ୍କ ବ୍ୟତୀତ, ଇଂରେଜୀ ସାହିତ୍ୟରେ ଅନ୍ୟ କୌଣସି ଲେଖକ ଏତେ ସ୍ମରଣୀୟ ଚରିତ୍ର ସୃଷ୍ଟି କରି ପାରିନାହାନ୍ତି । ଶାମ୍ ଓ୍ବେଲ୍‌ସ, ମିସେସ୍ ଗମ୍ପ୍ ଓ କାପ୍‌ଟେନ୍ ମୁଲର୍ ପ୍ରମୁଖ ଚରିତ୍ର ଯେପରି ଆମର ବହୁ ପରିଚିତ ନରନାରୀ—ଡିକେନ୍‌ସଙ୍କ ଉପନ୍ୟାସର ପୃଷ୍ଠାରେ ସେମାନଙ୍କ ସହିତ ଆମର ଥରେ ଯେଉଁ ପରିଚୟ ଘଟିଥିଲା, ତାହା ଶେଷପର୍ଯ୍ୟନ୍ତ ଅବିସ୍ମରଣୀୟ ହୋଇ ରହିଛି ।

ଏ ଚରିତ୍ର-ଚିତ୍ରଣର ପଦ୍ଧତି ଆଜି ଅବଶ୍ୟ ଅଚଳ ହେଲାଣି । ନରନାରୀମାନଙ୍କର ବହିରଙ୍ଗର ବର୍ଣ୍ଣନା ଅପେକ୍ଷା ସେମାନଙ୍କ ନିଭୃତ ଅନ୍ତରଲୋକର ବିଶ୍ଳେଷଣ ; ଆକୃତି, ଅବୟବ ଓ ଆଚରଣର ଚିତ୍ରଣ ପରିବର୍ତ୍ତେ, ସେମାନଙ୍କ ମାନସ ଭୂମିର ଉଦ୍‌ଘାଟନ—ଆଜିର ଉପନ୍ୟାସ ମାନଙ୍କରେ ମୁଖ୍ୟ ପ୍ରବୃତ୍ତିରେ ପରିଣତ ହେଲାଣି । ଏ ପରିସ୍ଥିତିରେ ଉପନ୍ୟାସ ସବୁ କ୍ରମେ ହେଲାଣି ଚରିତ୍ରହୀନ । ସମାଜ ଜୀବନରେ ମଧ୍ୟ ସେପରି ସ୍ୱାତନ୍ତ୍ର୍ୟସମ୍ପନ୍ନ ଚରିତ୍ର ଏବେ ଦୁର୍ଲ୍ଲଭ । ଅନ୍ୟ ସହିତ ସମକକ୍ଷ ହେବାପାଇଁ, ଆଜି ସମାଜରେ ଚାଲିଛି ଯେଉଁ ପ୍ରବଳ ପ୍ରତିଯୋଗିତା—ସେଥିରେ ଗୋଟିଏ ନିର୍ଦ୍ଦିଷ୍ଟ ଷ୍ଟାଣ୍ଡାର୍ଡ ଭିତରେ ରହିବାକୁ ସମସ୍ତେ ଅଧିକତର ଭାବରେ ନିରାପଦ ବିବେଚନା କରୁଅଛନ୍ତି । ଫଳରେ ସମାଜର ନରନାରୀ ବୈଶିଷ୍ଟ୍ୟହୀନ ହୋଇ ପଡୁଥିବାରୁ ଉପନ୍ୟାସର ନରନାରୀ ମଧ୍ୟ ହୋଇ ଉଠୁଛନ୍ତି ଚରିତ୍ରହୀନ । ସେଥିପାଇଁ ଆଜିର ଉପନ୍ୟାସମାନଙ୍କରେ ଊନବିଂଶ ଶତାବ୍ଦୀର ଚରିତ୍ରବଳୀର ସ୍ମରଣୀୟତା ଖୋଜିଲେ ମିଳିବ ନାହିଁ । ଔପନ୍ୟାସିକ ଚାର୍ଲସ ଡିକେନ୍‌ସଙ୍କ ଶତବାର୍ଷିକୀ ପାଳନ ମଧ୍ୟରେ ହିଁ ଶିକ୍ଷିତ ପାଠକ ସମାଜ ଆଜି ହୁଏତ ସେପରି ସେହି ସବୁ ଚରିତ୍ରର ସନ୍ଧାନ କରୁଛି ।

ଚାର୍ଲସ୍ ଡିକେନ୍‌ସଙ୍କ ଉପନ୍ୟାସରେ ହୁଏତ କୌଣସି ନିର୍ଦ୍ଦିଷ୍ଟ 'କମିଟ୍‌ମେଣ୍ଟର'ର ସୋଚ୍ଚାର ଉଦ୍‌ଘୋଷଣ ନ ଥିଲା । ମାତ୍ର ତାଙ୍କର ପ୍ରତ୍ୟେକ ଉପନ୍ୟାସର ଥିଲା ଏକ ସୁନିର୍ଦ୍ଦିଷ୍ଟ ସାମାଜିକ ଆଭିମୁଖ୍ୟ । ଊନବିଂଶ ଶତାବ୍ଦୀ ଶିଳ୍ପ ବିପ୍ଳବ ( ଇଣ୍ଡଷ୍ଟ୍ରିଆଲ୍ ରିଭଲ୍ୟୁସନ୍ )ରେ ପ୍ରକାଶ ପାଇଥିଲା, ଶ୍ରମିକ ସମାଜ ପ୍ରତି ଯେଉଁ ଅମାନୁଷିକ ଶୋଷଣ ଓ ଉତ୍ପୀଡ଼ନ

ବିରୁଦ୍ଧରେ ଡିକେନ୍ସଙ୍କ 'ଅଲିଭର ଟୁଇଷ୍ଟ' ଓ ହାର୍ଡ଼ ଟାଇମ୍ସ' ପ୍ରଭୃତି ଉପନ୍ୟାସରେ ଘୋଷିତ ହୋଇଥିଲା ପ୍ରଚଣ୍ଡ ପ୍ରତିବାଦ । ଡିକେନ୍ସଙ୍କ ସାହିତ୍ୟ ସେ ଯୁଗର ମନୋରଞ୍ଜନ ପାଇଁ କେବଳ ଉଦ୍ଦିଷ୍ଟ ନ ଥିଲା, ଏହା ମଧ୍ୟ ଥିଲା ତାଙ୍କ ସମସାମୟିକ କାଳର ଅନୁଷ୍ଠାନ ଓ ମୂଲ୍ୟବୋଧ ପ୍ରଭୃତିର ଏକ କଠୋର ସମାଲୋଚନା !

( କଳିଙ୍ଗ ୨୧ । ୬ । ୭୦ )



# ମିନୀ ଓ ମାକ୍‌ସୀ

ଓଡ଼ିଶାର ସର୍ବପ୍ରଥମ ଅଣୁ ପତ୍ରିକା "ଅଣୁ ଲେଖା"ର ପ୍ରଥମ ସଂଖ୍ୟା ( ଜୁନ୍ ୧୯୭୦ ) ସମ୍ପାଦିକା ଶ୍ରୀମତୀ ବୈଜୟନ୍ତୀ ଦାସ ( କୋରାପୁଟ )ଙ୍କ ଠାରୁ ପାଇ ଧନ୍ୟବାଦ ଜଣାଉଛି । ମିନୀ ଅଣୁ ନୁହେଁ । ବରଂ 'ମିନୀ'ର ଅନୁବାଦ 'କ୍ଷୁଦ୍ର' ଅଧିକ ଯଥାର୍ଥ । ଇଂରାଜୀ 'ମିନୀ' ଶବ୍ଦଟି ପୁଣି ଏପରି କେତେକ ବ୍ୟଞ୍ଜନା ଆହରଣ କରିଛି 'ଅଣୁ' ଶବ୍ଦ ମଧ୍ୟରେ ଯାହା ଯଥାର୍ଥ ଭାବରେ ପ୍ରକାଶିତ ହୋଇପାରିବା ସମ୍ଭବ ନୁହେଁ । 'ଅଣୁ' ଶବ୍ଦଟି ମେଜାଜ୍‌ରେ ମାକ୍‌ସୀ ( Maxi ) । 'ମିନୀ'ର ରିଜେକ୍‌ସନ ବା ପ୍ରତ୍ୟାଖ୍ୟାନ 'ଅଣୁ' ଶବ୍ଦପରି ଗୋବରଗଣ୍ଡା ଶବ୍ଦରେ ମିଳେ ନାହିଁ । ମୋଟ କଥା, ମିନୀ ଅଣୁ ନୁହେଁ । ଅଣୁ ହେଉଛି 'ଏଷ୍ଟାବ୍ଲିଶ୍‌ମେଣ୍ଟ'ର ଶବ୍ଦ । ମିନୀ କିନ୍ତୁ ଆଣ୍ଟି-ଏଷ୍ଟାବ୍ଲିଶମେଣ୍ଟ । ( ଅଣୁ ଲେଖା ପତ୍ରିକାର ଆକାର ୪ ଇଞ୍ଚ X ୩ ଇଞ୍ଚ, ପୃଷ୍ଠା ସଂଖ୍ୟା ୩୨ । କ୍ଷୁଦ୍ରଗଳ୍ପ ଓ କବିତା ସାଙ୍ଗକୁ ଏଥିରେ ପ୍ରବନ୍ଧ ମଧ୍ୟ ରହିଛି । )

'ମିନୀ'ର ପ୍ରଥମ ଆବିର୍ଭାବ—ସାଂପ୍ରତିକ କାଳରେ ହୋଇଥିଲା ନାରୀର ପରିଚ୍ଛଦରେ । ମିନୀସ୍କାର୍ଟ ସବୁ ଦୈର୍ଘ୍ୟରେ ହ୍ରାସ ପାଇ ପାଇ କ୍ରମେ ତାହା ଅଟକି ରହିଥିଲା, କଟିତଳେ ଏକ ବିପଜ୍ଜନକ ଆଙ୍ଗିକରେ । ଏହାପରେ ଆସିଥିଲା 'ମିନୀ' ମାଗାଜିନ । କଲିକତାରେ ଗତ ସପ୍ତାହରେ କେତେଗୋଟି ମିନୀ-ନାଟକ ଅଭିନୀତ ହୋଇଥିବାର ସମ୍ବାଦ ମଧ୍ୟ ମୁଁ ସମ୍ବାଦପତ୍ରରେ ଲକ୍ଷ୍ୟ କରିଛି । ନାଟକର ସମୟ, ସାତ ମିନିଟ ।

'ମିନୀ'ର ଆକର୍ଷଣ କିନ୍ତୁ କ'ଣ ନୂତନ ? ଅନ୍ତତଃ ଏଲୋରା ଓ ଅଜନ୍ତା ଯୁଗର ପରିଚ୍ଛଦ ରୁଚି ଏହାର ସାକ୍ଷ୍ୟ ବହନ କରେ ନାହିଁ । ମିନୀ କବିତା ବା ମିନୀ ନାଟକ ନିତାନ୍ତ 'ଭୂଇଁ ଫୋଡ଼' ଭାବରେ ନୂତନ ନୁହେଁ । ସଂସ୍କୃତ କାବ୍ୟଯୁଗରେ ମଧ୍ୟ ଏକପଦୀ ଶ୍ଳୋକ ରଚିତ ହୋଇଥିଲା ।

ସେସବୁ ଉଦ୍ଭଟ ନାମରେ ପରିଚିତ । କେବଳ ପ୍ରାଚ୍ୟ ସାହିତ୍ୟରେ ନୁହେଁ, ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ 'ଟ୍ରିଓଲେଟ୍' 'ମାଡ୍ରିଗଲ୍' 'ଓ' 'ରମୋ' ପ୍ରଭୃତି ବିଭିନ୍ନ ମିନି ଆଙ୍ଗିକର କବିତା ମଧ୍ୟଯୁଗରେ ରଚିତ ହୋଇଥିଲା ।

ଆଜିର 'ମିନି' ଆଙ୍ଗିକରେ ସେ ସବୁର ସମଗୋତ୍ରୀୟ ହେଲେ ହେଁ, ଏହାର ମେଜାଜ୍ କିନ୍ତୁ ଅଲଗା । ଆଜିର 'ମିନି' ଏକ ମାନସିକ, ବୌଦ୍ଧିକ ପ୍ରତ୍ୟାଖ୍ୟାନ । ଆଜିର ଅନୁଷ୍ଠାନ (ଏଷ୍ଟାବ୍ଲିସ୍‌ମେଣ୍ଟ) ସବୁ ଏତେ ବିଶାଳ, ସୁଦୂର ପ୍ରସାରୀ ଓ ସୁସଂଗଠିତ ଯେ, ବ୍ୟକ୍ତିର ସତ୍ତା ଓ ତାହାର ସ୍ୱାତନ୍ତ୍ର୍ୟ ତାହା ମଧ୍ୟରେ ବିଲୁପ୍ତ, ନିଃଶେଷିତ ହୋଇ ଯାଇଛି । ଘଟାଟୋପ ସବୁ ଏପରି ସମ୍ଭ୍ରାନ୍ତ ଭାବରେ ସୁବିସ୍ତୃତ ଯେ, ତାହାର ନେପଥ୍ୟରେ ଆତ୍ମଗୋପନ କରିଛି ବହୁ ଧୂର୍ତ୍ତତା ଓ ଶଠତା···ନକ୍ସଲପନ୍ଥୀ ମାନଙ୍କ ଦୃଷ୍ଟିରେ, ଗାନ୍ଧୀ ପ୍ରତିମୂର୍ତ୍ତିର ନେପଥ୍ୟରେ ଶୋଷଣଧର୍ମୀ ଏକ ସମାଜ ବ୍ୟବସ୍ଥା ଆତ୍ମଗୋପନ କରିଥିବା ପରି ।) ମାକ୍ସି ମାଗାଜିନ ସବୁ ଏପରି ପୃଥୁଳ ଯେ, ତାହାର ସୁଦୃଶ୍ୟ, ମଖମଲ ପ୍ରଚ୍ଛଦପଟର ନେପଥ୍ୟରେ ଲୁଚି ଯାଉଛି, ବହୁ ଦୁରନ୍ତ, ସୃଷ୍ଟି ଧର୍ମୀ ଚପଳତା ।

ମିନି ସ୍କାର୍ଟଠାରୁ ମିନି ମାଗାଜିନ୍ ଏ ସବୁର ପ୍ରତ୍ୟାଖ୍ୟାନ ଓ ପ୍ରତିବାଦ । ଏ ପରିସ୍ଥିତିରେ 'ମିନି ସାହିତ୍ୟ' ଯେ ଚଳିତ ସପ୍ତଦଶକର ସାହିତ୍ୟିକ ଫେସନ ହେବାପାଇଁ ଯାଉଛି, ସେଥିରେ ସନ୍ଦେହ ନାହିଁ । କିନ୍ତୁ ଏ ସାହିତ୍ୟର ଶୈଳୀ ସେ ସନାତନ ଶୈଳୀଠାରୁ ଯେପରି ସ୍ୱତନ୍ତ୍ର ଓ ସ୍ୱକୀୟତା ସମ୍ପନ୍ନ ହେବା ଆବଶ୍ୟକ ତାହାର ବିଷୟ ବସ୍ତୁରେ ମଧ୍ୟ ରହିବା ଉଚିତ୍ ସେହିପରି ପ୍ରତ୍ୟାଖ୍ୟାନଧର୍ମୀ ତୀକ୍ଷ୍ଣତା । 'ମିନି ମାଗାଜିନ୍' ତେଣୁ ଅପେକ୍ଷା କରୁଛି, ଏକ ନୂତନ ଲେଖକ ଗୋଷ୍ଠୀ ।

(କଳିଙ୍ଗ ତା ୫ । ୭ । ୭୦)



# ପ୍ରଥମ ଉପନ୍ୟାସ

ଆମେରିକା 'ଟାଇମ୍' ପତ୍ରିକାର ଏକ ପରିସଂଖ୍ୟାରୁ ପ୍ରକାଶ ଆମେରିକାରେ ପ୍ରତିବର୍ଷ ଏବେ ପ୍ରାୟ ୧୩୨ ନୂତନ ଲେଖକଙ୍କ ପ୍ରଥମ ଉପନ୍ୟାସ ପ୍ରକାଶ ପାଉଛି । ହାରାହାରି ପ୍ରତି ଉପନ୍ୟାସର ପ୍ରଥମ ସଂସ୍କରଣର ପ୍ରସାର ଓ ବିକ୍ରୟ ୩,୫୦୦ କପିରୁ ବେଶୀ ନୁହେଁ । ସାହିତ୍ୟ ବିଳୟର ଯୁଗରେ ଆମେରିକାର ଔପନ୍ୟାସିକମାନଙ୍କର ଏ ଉତ୍ପାଦନହାର ପୃଥିବୀର ଅନ୍ୟ ଯେ କୌଣସି ସାହିତ୍ୟ ତୁଳନାରେ ଯେ ସର୍ବୋଚ୍ଚ ସନ୍ଦେହ ନାହିଁ । ବସ୍ତୁତଃ ସମଗ୍ର ଭାରତୀୟ ଭାଷା ସାହିତ୍ୟରେ ପ୍ରତିବର୍ଷ ଏତେ ସଂଖ୍ୟାରେ "ପ୍ରଥମ ଉପନ୍ୟାସ" ଉତ୍ପାଦିତ ହେଉଥିବ ବୋଲି ମନେ ହୁଏ ନାହିଁ । ଏକ ଟେକ୍ନୋଲଜିକାଲ ସମାଜରେ, ସୃଷ୍ଟିଧର୍ମୀ ସାହିତ୍ୟ ପାଇଁ ଆଗ୍ରହ ଓ ପ୍ରେରଣା ହ୍ରାସ ପାଇବା ପରିବର୍ତ୍ତେ ଯେ କ୍ରମବର୍ଦ୍ଧିତ ହେଉଛି, ଏହା ପୁଣି କମ୍ ଆଶାପ୍ରଦ ନୁହେଁ । ପରିମାଣାତ୍ମକ ଦୃଷ୍ଟିରୁ ଏପରି ସିଦ୍ଧାନ୍ତ କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ସମର୍ଥିତ ହୁଏ ନାହିଁ । 'ଟାଇମ' ପତ୍ରିକାର ଯେଉଁ ସଂଖ୍ୟାରେ ଏ ପରିସଂଖ୍ୟା ପ୍ରକାଶ ପାଇଛି, ସେହି ସଂଖ୍ୟାରେ (ଜୁନ ୨୯—୧୯୭୦) "The silent Generation Revisited" ଶୀର୍ଷକ ଏକ ନିବନ୍ଧରେ ଆମେରିକାର ସାଂପ୍ରତିକ ଉପନ୍ୟାସର ଏକ ମୂଲ୍ୟାୟନ ଏହିପରି ପ୍ରକାଶ ପାଇଛି···

"Our generation has produced an extraordinary number of good journalists, but it is usually fatal to novelist or poet. who must have conviction in order to create. Our outstanding artists of prose and poetry can be connted quite literally or the fingers of one hand. Ever the best of them seem uncomfortable with the major states of life. Their concerns one more with language and style···There is no Faulkner, no

Hemingway, no Fitzerald or O'Neil in our lost generation.

ଏ ଯୁଗର ଉତ୍ପାଦନ ପ୍ରାଚୁର୍ଯ୍ୟ ଓ ନିତ୍ୟନୂତନ ସୃଷ୍ଟିର କୋହଲ ମଧ୍ୟରେ ଫକ୍‌ନର୍, ହେମିଙ୍ଗ୍‌ୱେ, ଫିଜରଲ୍ଡ଼ ବା ଓ'ନିଲଙ୍କ ପରି ଔପନ୍ୟାସିକ ଯେ ଆଉ ନାହାନ୍ତି, ତାହା ଏହି ଅକୁଣ୍ଠିତ ସ୍ୱୀକୃତି ମଧ୍ୟରେ ସ୍ପଷ୍ଟ ହୋଇଯାଏ। ଏ ଯୁଗରେ ସେପରି ଲେଖକମାନଙ୍କର ସଂଖ୍ୟା ଅଗଣନୀୟ। ଆଜିର ଲେଖକମାନଙ୍କର ଦୃଷ୍ଟି, ଭାଷା ଓ ଶୈଳୀ ପ୍ରତି ଯେତିକି ନିବନ୍ଧ, ଜୀବନର ସ୍ୱରୂପ, ସମସ୍ୟା ଓ ସଙ୍କଟ ପ୍ରତି ସେତିକି ନୁହେଁ। ତେଣୁ ଏ ଯୁଗରେ ଫକନର୍ ବା ହେମିଙ୍ଗୱେଙ୍କ ପରି ଔପନ୍ୟାସିକ ଆଉ ସମ୍ଭବ ନ ହେବା ଅତି ସ୍ୱାଭାବିକ।

ବସ୍ତୁତଃ ଏ ବିଡ଼ମ୍ବନା କେବଳ ଆମେରିକାନ୍ ସାହିତ୍ୟରେ ନୁହେଁ; ଓଣା ଅଧିକେ ପ୍ରତି ଦେଶର ସମସାମୟିକ ସାହିତ୍ୟ ସଂପର୍କରେ ଏ ମୂଲ୍ୟାୟନ ମଧ୍ୟ ପ୍ରଯୋଜ୍ୟ। ସମାଜ ଯେଉଁ ପରିମାଣରେ ଯାନ୍ତ୍ରିକ ହୁଏ, ସେହି ପରିମାଣରେ ହୋଇଥାଏ 'ଡସ୍‌ଇଣ୍ଟିଗ୍ରେଟେଡ଼' ବା ଛିନ୍ନମୂଳ। ଯାନ୍ତ୍ରିକ ସମାଜରେ ପୁଣି ଉତ୍ପନ୍ନ ଦ୍ରବ୍ୟର ନିତ୍ୟନୂତନ ପ୍ୟାଟର୍ଣ୍ଣ ବା ମଡ଼େଲ୍ ଉପରେ ଯେତିକି ଗୁରୁତ୍ୱ ଆରୋପିତ ହୋଇଅଛି, ତାହାର ଅନ୍ତର୍ନିହିତ ମୂଲ୍ୟ ପ୍ରତି ସେତିକି ଦୃଷ୍ଟି ଦିଆଯାଇ ନାହିଁ। କାରଣ ପ୍ରତିଯୋଗିତାମୂଳକ ପଣ୍ୟ ବଜାରରେ ବହିରଙ୍ଗର ଚାକଚକ୍ୟ ଅନ୍ତରଙ୍ଗର ମୂଲ୍ୟ ଓ ପ୍ରକୃତି ଅପେକ୍ଷା ଅଧିକତର ଲାଭପ୍ରଦ ବିବେଚିତ ହୁଏ। ଆଜିର ସାର୍ବଜନୀନ ମନୁଷ୍ୟ ସମାଜ ଏହି ଷ୍ଟାଇଲ୍ ଓ ଟେକ୍‌ନିକ୍‌ର ଔଜ୍ଜ୍ୱଲ୍ୟ ମଧ୍ୟରେ ପ୍ରବଳ ଭାବରେ ମୋହଗ୍ରସ୍ତ ହୋଇ ପଡ଼ିଛି। ଏ ସମାଜରେ ଅନ୍ତରଙ୍ଗ ଅପେକ୍ଷା ବହିରଙ୍ଗର ଆକର୍ଷଣଟା ବେଶୀ। ସାଂପ୍ରତିକ ସାହିତ୍ୟରେ ଉଦ୍ଭଟ ଏକ୍‌ସପେରିମେଣ୍ଟେସନର ମୂଳ କାରଣ ମଧ୍ୟ ଏଇଠାରେ। ଏ ପରିସ୍ଥିତି କିନ୍ତୁ ଶୁଦ୍ଧ ସାହିତ୍ୟ ପାଇଁ ଅନୁକୂଳ ନୁହେଁ। ଆମେରିକାନ୍ ସାହିତ୍ୟ ପକ୍ଷରେ ଏହା ଯେତିକି ସତ୍ୟ, ଭାରତୀୟ ସାହିତ୍ୟ ପକ୍ଷରେ ମଧ୍ୟ ଏହା ସେତିକି।

(କଳିଙ୍ଗ ତା ୧୨ । ୭ । ୭୦)



# ସାଂପ୍ରତିକ

ଓଂ ଷ୍ଟ ଛ (କଟକ), ଅକବିତା (ସମ୍ବଲପୁର), ନକ୍ଷତ୍ର ଗୋଷ୍ଠୀ (ବାଲେଶ୍ୱର), ଅନାମ (ପୁରୀ) ପରେ ଭଞ୍ଜଭୂମି ଗଞ୍ଜାମର ବ୍ରହ୍ମପୁର ସହରରେ ଏକ ନୂତନ ଗୋଷ୍ଠୀର ଅଭ୍ୟୁଦୟ ହୋଇଛି 'ଅବୁଝା'। ଏ ଗୋଷ୍ଠୀକୁ "ବୁଝି ହୁଏ ନାହିଁ" ଅର୍ଥରୁ ଏହା 'ଅବୁଝା' କିମ୍ବା ସପ୍ତ ଦଶକର ଅବୁଝା ମେଜାଜକୁ ଏହା ପ୍ରତିନିଧିତ୍ୱ କରେ; ତାହା ବୁଝିବା ଅବଶ୍ୟ ଦୁଷ୍କର। ତେବେ 'ଅବୁଝା'ର ସାମୟିକ ସଂକଳନ (୨ୟ ସଂଖ୍ୟା) "ଉବାଚ"ରେ ଶ୍ରୀ ଅବଧୂତ "ତରଙ୍ଗ" ଶୀର୍ଷକ ( ଏହା ସ୍କେଚ୍ ? କବିତା ? ମିନି ଗଳ୍ପ ? )···ସେ ବୋଧହୁଏ 'ଅବୁଝା'ର ଇସ୍ତାହାର ଘୋଷିତ ହୋଇଛି···

"ଆଜର ସୃଷ୍ଟି ଅସଂଯତ
ତେଣୁ ଆକାଶ ସୀମିତ
ପୃଥିବୀ ସଂକୁଚିତ
ରାତି ଏକ ତୃଷ୍ଣା
ଆଲୋକ ଦୁର୍ଭେଦ୍ୟ
ଦୃଷ୍ଟି ଅସ୍ଥିର
× × ×
ସ୍ଥିତି : ପାହାଚ ଅନେକ ମୃତ୍ୟୁର"
ଏଥିରେ କେବଳ ମୁଁ ଯୋଗ କରିବା ପାଇଁ ଚାହେଁ
"ସାହିତ୍ୟ : ମିଥ୍ୟା।"

ମୋର ମନେହୁଏ ଆଜ ସମୟ ଆସିଛି—କେହି ଉଚ୍ଚକଣ୍ଠରେ ଚିତ୍କାର କରିବା ଆବଶ୍ୟକ—ଅନେକ ହୋଇଗଲା; ଏବେ ପୂର୍ଣ୍ଣଚ୍ଛେଦ ପଡ଼ୁ!

ଆଜ ସମାଜ ଅସଂଯତ, ତେଣୁ ଏହାର ସାହିତ୍ୟ ଅସଂଯତ ହେବା ପାଇଁ ବାଧ୍ୟ। ଆଜର ସମାଜରେ କୌଣସି ଅନୁଶାସନ ନାହିଁ; ତେଣୁ ଆଜର ସାହିତ୍ୟ ସ୍ୱାଭାବିକ ଭାବରେ ଅନୁଶାସନ ମୁକ୍ତ 'ଫ୍ରି-ରାଇଟିଙ୍ଗ୍'।

ଆଜିର ଜୀବନ ଶତ ବିକୃତିରେ ମଳିନ । ତେଣୁ ସାଂପ୍ରତିକ ସାହିତ୍ୟରେ ତାହାର ପ୍ରତିଫଳନ ମଧ୍ୟ ଅସ୍ୱାଭାବିକ ନୁହେଁ । ଆଜିର ଜୀବନରେ ହୁଏତ "ଗ୍ଲାମାର୍" (Glamour) ଅଛି, ମାତ୍ର ସେଥିରେ ଲାବଣ୍ୟ ନାହିଁ । ସେଥିପାଇଁ ସାଂପ୍ରତିକ ସାହିତ୍ୟର ଶୈଳୀ, ଇଂରାଜୀରେ ଯାହାକୁ କୁହାଯାଏ—ଷ୍ଟାକାଟୋ (Stacato) । କକ୍ଷଚ୍ୟୁତ ଓ ନିଃସଙ୍ଗତା ମଧ୍ୟରୁ ମୁକ୍ତି ପାଇ ସେକ୍ସ ଆଜି ପଳାୟନର ଏକମାତ୍ର ପଥ । ସେଥିପାଇଁ ସାଂପ୍ରତିକ ରଚନାରେ ଯୌନତା ଆଉ ବିକୃତି ନୁହେଁ । ଆଜିର ଜୀବନ ମୁହୂର୍ତ୍ତ ସର୍ବସ୍ୱ, ସେଥିପାଇଁ ଆଜିର ସାହିତ୍ୟ ମଧ୍ୟ "ମିନି" ।

ସାଂପ୍ରତିକ ସାହିତ୍ୟ ଏ ସବୁର ଯଦି ପ୍ରତିନିଧିତ୍ୱ କରେ, ତାହେଲେ ସେଥିରେ ଆମପରି ଆସନ୍ନ-ପଞ୍ଚାଶମାନେ ଆର୍ତ୍ତନାଦ କଲେ ହେଁ ଖୁବ୍ ବିସ୍ମିତ ବା 'ଶକେଡ୍' ହେବା ଉଚିତ ନୁହେଁ । ମାତ୍ର ଏହାର ଗତି କୁଆଡ଼େ ? ପରିଣତି କ'ଣ ? ଏସବୁ ଯେ ସାମୟିକ ନୂତନତ୍ୱର ମୋହ ଓ ଉତ୍ତେଜନା ପରି ମଉଳି ପଡ଼ୁଛି ଓ ପଡ଼ିବ, ସେଥିରେ ମଧ୍ୟ ସନ୍ଦେହ ନାହିଁ । ଏସବୁ "ଆଣ୍ଟି-ରାଇଟିଙ୍ଗ୍" ବା ଅନୁଶାସନ ମୁକ୍ତ, ଅବନ୍ଧନ, ଦିଗମ୍ବରୀ ଲେଖାମଧ୍ୟରୁ କ'ଣ "Waiting for the Godot" ପରି ସୃଷ୍ଟି ସମ୍ଭବ ହୋଇ ପାରିବ ? କାମ୍ୟୁ, ଇଉନେସ୍କୋ, ସାର୍ତ୍ରେ । ହେନେରୀ-ମିଲର୍, ସାମୁଏଲ ବେକେଟ୍‌ଙ୍କ ପରି ଲେଖକ ବାହାରି ପାରିବେ ? "ନ୍ୟୁ ଲେଫ୍‌ଟ" ପରି ବୌଦ୍ଧିକ ବିପ୍ଳବର ଅଭ୍ୟୁଦୟ ହୋଇ ପାରିବ ? ଆତ୍ମକଣ୍ଡୁସାର ସପ୍ତଦଶକର ଲେଖକମାନେ ଏହାର ଉତ୍ତର ଦେବା ଆବଶ୍ୟକ ।

ଗୋଷ୍ଠୀଗଠନ ପୁଣି କେଉଁଥିପାଇଁ ? କକ୍ଷଚ୍ୟୁତ ନିଃସଙ୍ଗତା ମଧ୍ୟରେ କେତେଜଣ ପଳାତକ, ଏକ କ୍ଷୁଦ୍ର ଗୋଷ୍ଠୀ ମଧ୍ୟରେ ନିଜ ନିଜ ସତ୍ତାର ଉପଲବ୍ଧି ପାଇଁ ଏକତ୍ରିତ ହେବା ସ୍ୱାଭାବିକ । କିନ୍ତୁ ସେପରି ଗୋଷ୍ଠୀର ଯଦି ଏକ ନିର୍ଦ୍ଦିଷ୍ଟ ଜୀବନ ଦର୍ଶନ ନ ଥାଏ ଓ ତାହା ନିଜ ନିଜର ଜୀବନ-ଚର୍ଯ୍ୟା ପୁଣି ସାହିତ୍ୟ କର୍ମରେ ପ୍ରତିଫଳିତ ନ ହୁଏ, ତା ହେଲେ ସେପରି ଗୋଷ୍ଠୀଗଠନର ତାତ୍ପର୍ଯ୍ୟ କେଉଁଠି ? ଏହାର ଅଭାବରେ ଏସବୁ ଏକ ନିଛକ ଫ୍ୟାଶନ୍‌ରେ ପରିଣତ ହେଲେ, ଅବଶେଷରେ ବହୁ ଆଶାବାଦୀ ଉଦ୍ୟମକୁ ଏକ ବିପୁଳ ଅପଚୟରେ ପର୍ଯ୍ୟବସିତ କରିବ ।



କଳିଙ୍ଗ ତା ୧୯ । ୭ । ୭୦)

# ଗୋଷ୍ଠୀ ଓ ସାହିତ୍ୟ

ସାଂପ୍ରତିକ ଗୋଷ୍ଠୀ ସାହିତ୍ୟର ଆଭିମୁଖ୍ୟ ସମ୍ପର୍କରେ ଏହି ଗ୍ରନ୍ଥରେ "ସାଂପ୍ରତିକ" ଶିରୋନାମାରେ ମୁଁ ଯେଉଁ ଆଲୋଚନା କରିଥିଲି, ତାହା ଇତି ମଧ୍ୟରେ ପ୍ରବଳ ବାଦବିସମ୍ବାଦ ସୃଷ୍ଟି କରିଅଛି । ସେ ବିସମ୍ବାଦରେ ଏବେ ସୁଦ୍ଧା ପୂର୍ଣ୍ଣଚ୍ଛେଦ ପଡ଼ି ନାହିଁ । ସାହିତ୍ୟ ସାର୍ବଜନୀନ । ଗୋଷ୍ଠୀ ସାହିତ୍ୟ ବୋଲି ଯେ ଗୋଟାଏ ସାହିତ୍ୟ ଥାଇପାରେ, ତାହା ମୁଁ ଅନ୍ତତଃ ବିଶ୍ୱାସ କରେ ନାହିଁ । ପୁଣି ସାହିତ୍ୟ ହେଉଛି ଏକ ନିଭୃତ, ନିଃସଙ୍ଗ ସାଧନାର ବସ୍ତୁ । ସାହିତ୍ୟ ପାଇଁ ଗୋଷ୍ଠୀ ଗଠନର ପ୍ରୟୋଜନ ନାହିଁ ।

ତଥାପି ୟୁରୋପୀୟ ଚିତ୍ରକଳା ଓ ସାହିତ୍ୟର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯାଏ, ସମଧର୍ମୀ ଶିଳ୍ପୀ ଅଥବା ଲେଖକମାନେ ବିଭିନ୍ନ ସମୟରେ ନିଜ ନିଜର କଳାତତ୍ତ୍ୱ ଓ ସାହିତ୍ୟତତ୍ତ୍ୱକୁ ପ୍ରତିଷ୍ଠିତ କରିବା ପାଇଁ ଗୋଷ୍ଠୀବଦ୍ଧ ଭାବରେ ପ୍ରଚେଷ୍ଟା କରି ଆସିଅଛନ୍ତି । ମାତ୍ର କୁତ୍ରାପି ସେମାନେ ନିଜକୁ ଏକ 'ଗୋଷ୍ଠୀ' ରୂପେ ଘୋଷଣା କରି ନାହାନ୍ତି । ପରବର୍ତ୍ତୀ କାଳର ସମାଲୋଚକମାନେ କେବଳ ସେମାନଙ୍କୁ ଏକ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଆଖ୍ୟା ଦେଇଅଛନ୍ତି । ଗୋଷ୍ଠୀ ସେଠାରେ କେତେକ ସୁସ୍ପଷ୍ଟ ଆଦର୍ଶ ଓ ଆଭିମୁଖ୍ୟକୁ ଘେନି । ଏ ଗୋଷ୍ଠୀମାନଙ୍କର ଆଦର୍ଶ ଓ ଆଭିମୁଖ୍ୟ ଯେପରି ତତ୍ତ୍ୱନିଷ୍ଠ, ତାହାର ଅନୁଶୀଳନ ମଧ୍ୟ ସେହିପରି ଆନ୍ତରିକତାସମ୍ପନ୍ନ । ଏମାନେ ପୁଣି କଳା ଓ ସାହିତ୍ୟରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର 'ମୁଭ୍‌ମେଣ୍ଟ' (movement)ର ପ୍ରବର୍ତ୍ତକ ।

ୟୁରୋପୀୟ ସାହିତ୍ୟର ମଧ୍ୟଯୁଗରେ ପରିଦୃଷ୍ଟ ହୁଅନ୍ତି 'ଟ୍ରୁବାଦୁର୍' ଗୋଷ୍ଠୀ । ସାମନ୍ତବାଦୀ ସମାଜରେ ପ୍ରେମ, ପ୍ରଣୟ ଓ ଶୃଙ୍ଗାରର କାହାଣୀ ଏମାନଙ୍କ ସାହିତ୍ୟରେ ମୁଖ୍ୟ ଉପଜୀବ୍ୟ ଥିଲା । ଏମାନେ ପୂର୍ବବର୍ତ୍ତୀ 'ଜଙ୍ଗଲ୍ୟୁର' (Jongleurs) ବା ଚାରଣ କବିମାନଙ୍କ ଠାରୁ କାବ୍ୟ-

ତତ୍ତ୍ୱରେ ସ୍ୱତନ୍ତ୍ର ଥିଲେ । ପ୍ରକୃତି ଥିଲା ଏମାନଙ୍କ କବିତାର ମୂଳତତ୍ତ୍ୱ । ପରବର୍ତ୍ତୀ କାଳର ସମାଲୋଚକମାନେ ଏମାନଙ୍କ କବିତାରେ ଏକ ସାଧାରଣ ଆଭିମୁଖ୍ୟ ଓ କାବ୍ୟତତ୍ତ୍ୱ ଲକ୍ଷ୍ୟ କରି ଏମାନଙ୍କୁ 'ଟ୍ରୁବାଡୁର' ନାମରେ ଚିହ୍ନିତ କରିଥିଲେ ।

ରେନେସାଁ ଯୁଗରେ ସେହିପରି ଆସିଲେ 'ହ୍ୟୁମାନିଷ୍ଟ' ଗୋଷ୍ଠୀ (Humanists) । ପେଟ୍ରାର୍କ, ବୋକାସିଓ, ଇରାସ୍‌ମାସ୍ ଓ ସାର ଥମାସ୍ ମୁର୍ ପ୍ରମୁଖ ଥିଲେ ଏହି ଗୋଷ୍ଠୀର ଅଗ୍ରଗଣ୍ୟ । ମଧ୍ୟଯୁଗୀୟ ବିଶ୍ୱାସ ପରିବର୍ତ୍ତେ ବିଚାର ଓ ବଦ୍ଧ ସଂସ୍କାର ପରିବର୍ତ୍ତେ ମୁକ୍ତ ଚିନ୍ତା ଥିଲା ଏମାନଙ୍କ ସାହିତ୍ୟର ଭିତ୍ତି । ଏହି ସାଧାରଣ ଆଭିମୁଖ୍ୟ ଓ ଜୀବନଦର୍ଶନ ହେତୁ ସେମାନେ ପରିଚିତ ହୋଇଥିଲେ 'ହ୍ୟୁମାନିଷ୍ଟସ୍' ନାମରେ ।

'ହ୍ୟୁମାନିଷ୍ଟସ୍'ଙ୍କ ପରେ ଆସିଲେ ଷୋଡ଼ଶ ଶତାବ୍ଦୀର ମେଟାଫିଜିକାଲ (Metaphysical) କବିଗୋଷ୍ଠୀ । ବିଭିନ୍ନ ମାନସିକ ସ୍ତରରେ ଅସଂଲଗ୍ନ ଓ ପରସ୍ପର ବିରୋଧୀ ଆବେଗ ଓ ଅନୁଭୂତି ଏମାନଙ୍କ କବିତାରେ ପରିଦୃଷ୍ଟ ହେଉଥିବାରୁ ଏମାନଙ୍କ କବିତାରେ ଥିଲା ଏକ ଆପାତ ଦୁର୍ବୋଧତା । ଏହି ଦୁର୍ବୋଧତା ବା ଅସ୍ପଷ୍ଟତାକୁ ଲକ୍ଷ୍ୟ କରି, ସମାଲୋଚକମାନେ ଏମାନଙ୍କୁ ନାମିତ କରିଥିଲେ—'ମେଟାଫିଜିକାଲ ନାମରେ । ଜନ ଡନ୍ ଏହି ଗୋଷ୍ଠୀର ଶ୍ରେଷ୍ଠ ପ୍ରତିନିଧି ଅଟନ୍ତି । ମେଟାଫିଜିକାଲ୍ କବିଗୋଷ୍ଠୀଙ୍କ ଅନୁଶାସନ ମୁକ୍ତ ସାହିତ୍ୟର ଚରମ ପ୍ରତିକ୍ରିୟା ରୂପେ ପ୍ରକାଶ ପାଇଲେ 'ନିଓ କ୍ଲାସିସିଷ୍ଟ' (neo-classicists) ମାନେ । ଗ୍ରୀକ୍ ସାହିତ୍ୟାଦର୍ଶରୁ ଏମାନେ ଆହରଣ କରିଥିଲେ ସାହିତ୍ୟ ସୃଷ୍ଟିର ପ୍ରେରଣା । ଜନ୍ ମିଲ୍‌ଟନ୍ ('ପାରାଡାଇସ୍ ଲଷ୍ଟ'ର ଅମର କବି) ଥିଲେଏହି ଆଭିମୁଖ୍ୟର ପ୍ରବର୍ତ୍ତକ । ଯେଉଁମାନେ ଏହି ଆଭିମୁଖ୍ୟ ଦ୍ୱାରା ପ୍ରଭାବିତ ହୋଇଥିଲେ, ସେମାନେ ପରବର୍ତ୍ତୀ କାଳରେ ପରିଚିତ ହୋଇଥିଲେ 'ନିଓ କ୍ଲାସିସିଷ୍ଟ' ନାମରେ ।

'ନିଓ କ୍ଲାସିସିଜମ୍'ର କଠୋର ଅନୁଶାସନ, ଶୁଚିବାଦ ଓ ଶୃଙ୍ଖଳାର ପ୍ରତିବାଦ ସ୍ୱରୂପ ପ୍ରକାଶ ପାଇଲେ ୧୯ଶ ଶତାବ୍ଦୀର ପ୍ରି-ରାଫେଲାଇଟ୍ ଗୋଷ୍ଠୀ । ଦାନ୍ତେ ଗାବ୍ରିଏଲ୍ ରୋସେଟି, ଖ୍ରୀଷ୍ଟିନିଆ ରୋସେଟି, ହଲମାନ ହଣ୍ଟ୍, ସୁଇନବର୍ଣ୍ଣ ଓ ଉଇଲିଅମ ମରିସ୍ ପ୍ରମୁଖ ହେଲେ ଏ

ଗୋଷ୍ଠୀର ପ୍ର ତିନିଧି  'Art for Art's sake' (ଆର୍ଟର ଏକମାତ୍ର ଲକ୍ଷ୍ୟ ହେଲା ଆର୍ଟ ) ଏ ଗୋଷ୍ଠୀର ତତ୍ତ୍ୱ !  ଏମାନଙ୍କୁ ସଂସ୍କୃତ ସାହିତ୍ୟର 'ରସବାଦୀ' ମାନଙ୍କ ସହିତ ତୁଳନା କରାଯାଇପାରେ ।  ପ୍ରି-ରାଫେଲାଇଟ୍ ଚିତ୍ର ଓ ସାହିତ୍ୟରେ ତଥାକଥିତ ନୈତିକତା ଓ ଗୃହସ୍ଥିକ ଶୁଚିବୋଧର ବନ୍ଧନ ଯେପରି ଦୁର୍ବଳ, ଯୌନତାର ସଂକ୍ରମଣ ସେହିପରି ସୁସ୍ପଷ୍ଟ । ସେଥିପାଇଁ ପ୍ରି-ରାଫେଲାଇଟ୍ କବି ଗୋଷ୍ଠୀଙ୍କ ସାହିତ୍ୟକୁ ଭର୍ତ୍ସିତ କରାଯାଇଥିଲା 'ମାଂସଳ' (Fleshly School) ଆକ୍ଷେପରେ ।  ୧୮୪୮ ଖ୍ରୀଷ୍ଟାବ୍ଦରେ କେତେକ ଚିତ୍ରଶିଳ୍ପୀ, ପ୍ରଥମେ ଏକ ପ୍ରଦର୍ଶନୀରେ ସେମାନଙ୍କ ଚିତ୍ର ପ୍ରଦର୍ଶନ କରନ୍ତି ।  ତାହା ପରଠାରୁ ଏହି ଆଭିମୁଖ୍ୟସମ୍ପନ୍ନ ଚିତ୍ରଶିଳ୍ପୀ ଓ ଲେଖକମାନେ ପରିଚିତ ହୁଅନ୍ତି 'ପ୍ରି-ରାଫେଲାଇଟ୍' ନାମରେ ।

ଊନବିଂଶ-ବିଂଶ ଶତାବ୍ଦୀରେ, ରୋମାଣ୍ଟିକ୍, ସୁର-ରିଆଲିଷ୍ଟିକ୍, ନାଚୁରାଲିଷ୍ଟିକ୍, ଇମ୍ପ୍ରେସନିଷ୍ଟିକ୍, ସିମ୍ବଲିଷ୍ଟିକ୍, ଇମେଜିଷ୍ଟ୍ ଓ ଏକ୍‌ଜିଷ୍ଟେନ୍‌ସିଆଲିଷ୍ଟ ପ୍ରଭୃତି ବହୁ ଗୋଷ୍ଠୀ, କଳା ଓ ସାହିତ୍ୟ କ୍ଷେତ୍ରରେ ପ୍ରକାଶ ପାଇ ଆସି ଅଛନ୍ତି ।  ଏ ଗୋଷ୍ଠୀମାନଙ୍କର ବିସ୍ତୃତ ଆଲୋଚନା ଏକ ସ୍ୱତନ୍ତ୍ର ପ୍ରବନ୍ଧ ସାପେକ୍ଷ ।  ଭାରତୀୟ ସାହିତ୍ୟରେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ସାହିତ୍ୟାଦର୍ଶକୁ ନେଇ ଯେ ଗୋଷ୍ଠୀ ଗଠନ ହୋଇ ନାହିଁ ; ମାତ୍ର ଏ ସବୁ ଗୋଷ୍ଠୀ ଗଠିତ ହୋଇଥିଲା, ଏକ ନିର୍ଦ୍ଦିଷ୍ଟ ସାହିତ୍ୟାଦର୍ଶ ଓ ଜୀବନାଦର୍ଶକୁ କେନ୍ଦ୍ର କରି ।  ଏ ସବୁ ଗୋଷ୍ଠୀ ସାହିତ୍ୟର ଇତିହାସରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର 'ମୁଭ୍‌ମେଣ୍ଟ' (Movement)ର ପ୍ରସିଦ୍ଧି ଅର୍ଜନ କରି ପାରିଅଛନ୍ତି ।  ଏମାନଙ୍କର ସାହିତ୍ୟିକ ଲକ୍ଷ୍ୟ ଓ ଆଦର୍ଶ ଯେପରି ପରସ୍ପର ଠାରୁ ସ୍ୱତନ୍ତ୍ର, ରୀତି ଓ ଆଙ୍ଗିକ ସେହିପରି ମଧ୍ୟ ପରସ୍ପର ଠାରୁ ସୁନିର୍ଦ୍ଦିଷ୍ଟ ।

ମୁଁ କେବଳ ଆଶା ପ୍ରକାଶ କରିଥିଲି, ଆଜିର ଗୋଷ୍ଠୀ ସବୁ ସେହିପରି ସୁନିର୍ଦ୍ଦିଷ୍ଟ ସାହିତ୍ୟିକ ଲକ୍ଷ୍ୟ, ଆଦର୍ଶ, ରୀତି ଓ ଆଙ୍ଗିକ ନେଇ ଗଠିତ ହେଉ ।  ବିଭିନ୍ନ ଗୋଷ୍ଠୀ ଗଠନରେ ଯଦି ସେହିପରି ଆଭିମୁଖ୍ୟ ପ୍ରକାଶ ପାଉଥାଏ, ତା ହେଲେ ପ୍ରବୀଣ, ନବୀନ ନିର୍ବିଶେଷରେ ସମସ୍ତେ ଯେ ତାହାକୁ ସ୍ୱାଗତ କରିବେ, ସେଥିରେ ସନ୍ଦେହ ନାହିଁ ।  କିନ୍ତୁ ତାହା ହେଉଛି କି ?



(କଳିଙ୍ଗ—ତା ୨୩ । ୮ । ୭୦)

# ଉଲଙ୍ଗ ରସ

ଅଶ୍ଳୀଳତା ସମ୍ପର୍କରେ ବାଦ ବିସମ୍ବାଦର ଶେଷସିଦ୍ଧାନ୍ତ ଯାହା ହେଉ-ଥାଉ, ଇଂଲଣ୍ଡ ପରି ଏକ ରକ୍ଷଣଶୀଳ ଦେଶର ରଙ୍ଗମଞ୍ଚରେ ବର୍ତ୍ତମାନ ଅଭିନେତା ଅଭିନେତ୍ରୀମାନଙ୍କର ଯୌନାଙ୍ଗ ପ୍ରଦର୍ଶନ ନାଟ୍ୟରୁଚିରେ ପରିଣତ ହେଲାଣି । 'ଷ୍ଟେଟ୍ସମ୍ୟାନ' କାଗଜର ୩ ତାରିଖ ସେପ୍ଟେମ୍ବର ୧୯୭୦ ସଂଖ୍ୟାରେ ଲେଖକ-ସଂଘର ସଭାପତି, ଏ. ପି. ହର୍‌ବର୍ଟ "In decency on the stage" ଶୀର୍ଷକ ନିବନ୍ଧରେ ଏ ସମ୍ବାଦ ଘୋଷଣା କରି ଲେଖିଛନ୍ତି :

"Many British citizens must have been surprised to learn that actors may now display or dangle their private parts over the foot lights, for art or saleable excitement, without, the law officers of the crown or the police being able to interfere."

ଅର୍ଥାତ୍-ବହୁ ବ୍ରିଟିଶ୍ ନାଗରିକ ବର୍ତ୍ତମାନ ଜାଣି ବିସ୍ମିତ ହେବେ ଯେ ଏଣିକି ଅଭିନେତାମାନେ ସେମାନଙ୍କର ଯୌନାଙ୍ଗ ରଙ୍ଗମଞ୍ଚର ପାଦପ୍ରଦୀପ ସମ୍ମୁଖରେ କଳାଗତ ପ୍ରୟୋଜନରେ ହେଉ ଅଥବା ବିକ୍ରିକ ଉତ୍ତେଜନା ସୃଷ୍ଟି ପାଇଁ ହେଉ, ଉନ୍ମୋଚନ ଓ ପ୍ରଦର୍ଶନ କରିପାରିବେ । ରାଷ୍ଟ୍ରର ଆଇନ ଅଥବା ପୋଲିସ୍ ଅଫିସରମାନେ ଏଥିରେ କୌଣସି ପ୍ରକାର ବାଧା ଦେଇ ପାରିବେ ନାହିଁ ।

ରଙ୍ଗମଞ୍ଚରେ ଯୌନତା ପ୍ରଦର୍ଶନ ତ ସାମାନ୍ୟ କଥା—ଓ୍ୟାକିବହାଲ୍ ମହଲରୁ ଜଣାପଡ଼େ "Oh Calcutta" ନାମକ ଏକ ଚଳଚ୍ଚିତ୍ରରେ ଦଳବଦ୍ଧ ତରୁଣମାନଙ୍କର ଐକ୍ୟତାନିକ ହସ୍ତମୈଥୁନର ଦୃଶ୍ୟ କୁଆଡ଼େ

ପ୍ରଦର୍ଶିତ ହୋଇଛି ଓ ସମାଲୋଚକମାନେ ତାହାର ବେଶ୍ ତାରିଫ କରିଅଛନ୍ତି । ଏହାପରେ ରଙ୍ଗମଞ୍ଚର ପାଦପ୍ରଦୀପ ସମ୍ମୁଖରେ 'ଅଭିନେତା ଅଭିନେତ୍ରୀମାନଙ୍କର ମୈଥୁନ ଦୃଶ୍ୟର ସମ୍ଭାବନା ହୁଏତ ଦୂରବର୍ତ୍ତୀ ନୁହେଁ । ଏକ୍‌ସପେରିମେଣ୍ଟର ମୋହରେ ଭାରତୀୟ ରଙ୍ଗମଞ୍ଚ ହଠାତ୍ ଯେ ଦିନେ ଦିଗମ୍ବରୀ ନ ହେବ, ସେଥିରେ ପୁଣି କେଉଁ ସ୍ଥିରତା ଅଛି ? ରଙ୍ଗମଞ୍ଚରେ ଉଲଙ୍ଗତାର ଏପରି ଉତ୍କଟ ତାଣ୍ଡବ ଚାଲିଥିବାବେଳେ, ସାହିତ୍ୟରେ ଅଶ୍ଳୀଳତା ଯେଉଁ ବାଦ ବିସମ୍ବାଦ, ବାଳଖିଲ୍ୟତା ନିଶ୍ଚୟ । ଯୁଗର ପ୍ରବୃତ୍ତି ଆଜି ଉଲଙ୍ଗତା—ଏହା ସ୍ୱୀକାର କରିବା ଛଡ଼ା ଉପାୟ ନାହିଁ ।

ଏ ଉଲଙ୍ଗତା କିନ୍ତୁ ଭାରତୀୟ ସାହିତ୍ୟ ରୁଚିର ଶୃଙ୍ଗାର ବା ଆଦିରସ ନୁହେଁ । ଏ ଯୁଗର ଏହା ଏକ ନୂତନ ରସ—ଶୃଙ୍ଗାର ଓ ବୀଭତ୍ସର ମିଶାମିଶି ।

ଭାରତୀୟ କ୍ଳାସିକାଲ ସାହିତ୍ୟ, ଚିତ୍ରକଳା, ଭାସ୍କର୍ଯ୍ୟ ଓ ରଙ୍ଗମଞ୍ଚରେ ରତିପ୍ରଚେଷ୍ଟା ଯେ ନ ଥିଲା ନୁହେଁ । ଏହା କିନ୍ତୁ ଏକ ସ୍ଥାୟୀଭାବ ନ ଥିଲା । ଏସବୁ ଥିଲା, ଅନୁଭାବ ଅଥବା ବ୍ୟଭିଚାରୀ-ଭାବ ରୂପେ । ସେଥିପାଇଁ କ୍ଳାସିକାଲ୍ ସାହିତ୍ୟ, କଳା ଓ ମଞ୍ଚରେ ଅନାବୃତ୍ତ ରତିପ୍ରଚେଷ୍ଟା ରୁଚିକୁ ଆହତ କରୁ ନ ଥିଲା, ସଂସ୍କାରକୁ ପୀଡ଼ିତ କରୁ ନଥିଲା, କିମ୍ବା ସମାଜର ପାଠକ ଓ ଦର୍ଶକମାନଙ୍କର ଚିତ୍ତବୃତ୍ତିକୁ ବିକୃତ କରୁ ନ ଥିଲା । ବିଦଗ୍ଧ ସମାଜରେ ଏହା ରସ କୌଳିନ୍ୟ ଲାଭ କରିଥିଲା ।

ରଙ୍ଗମଞ୍ଚରେ ଶୃଙ୍ଗାରର ଆଦିପ୍ରବର୍ତ୍ତକ ଭରତ, ଶୃଙ୍ଗାରର ଲକ୍ଷଣ ନିର୍ଣ୍ଣୟ କରିବାକୁ ଯାଇ ଲେଖିଥିଲେ—ଯାହା "ଉଜ୍ଜ୍ୱଳବେଶାତ୍ମକ" ତାହାକୁହିଁ ଶୃଙ୍ଗାର କୁହାଯାଏ । ଆଲଙ୍କାରିକ ଅଭିନବ, ଏହାର ଟୀକା କରିବାକୁ ଯାଇ କହିଛନ୍ତି ; ସ୍ତ୍ରୀ ପୁରୁଷଙ୍କର ପରସ୍ପରାଭିଳାଷ ସ୍ୱରୂପ-କାମପ୍ରବୃତ୍ତିକୁ ଶୃଙ୍ଗାର ବା ରତି କୁହାଯାଏ ନାହିଁ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମିଳନ ଓ ବିରହର ଏକ ପରିପୂର୍ଣ୍ଣ ସୁଖସ୍ୱଭାବ ହେଲା ରତି । ଆମର ପୂର୍ବସୂରୀମାନେ ସାହିତ୍ୟ ଓ କଳାରେ ଏହି ସୁଖ ସ୍ୱଭାବକୁ ନାନା ଭାବରେ ରୂପାୟିତ କରିଥିଲେ । କାମ ପ୍ରବୃତ୍ତିକୁ ସେମାନେ ଏକ ମୌଳିକ 'ଇମୋସନ' ରୂପେ ସ୍ୱୀକାର କରି ଏହାର 'ସବ୍‌ଲିମେସନ' ବା

ଉଦ୍‌ଗମନ ପାଇଁ ନାନା ଭାବରେ ଚେଷ୍ଟିତ ଥିଲେ । ଭାରତୀୟ ଆଧ୍ୟାତ୍ମ କ ସାଧନାରେ ସୁଦ୍ଧା ଆସିଥିଲା ଏଇ ରକ୍ତ ବା ଶୃଙ୍ଗାର ।

କିନ୍ତୁ ଆଜିର ତଥାକଥିତ ଆଦ୍ୟ ବା ଶୃଙ୍ଗାର ରସ ମନୁଷ୍ୟର ସେହି କାମପ୍ରବୃତ୍ତିର ଉଦ୍‌ଗମନ ପରିବର୍ତ୍ତେ ତାହାକୁ ଯେପରି ଭୁଲ୍ଲ, ଜାନ୍ତବ ଓ ବୀଭତ୍ସ କରିବାରେ ଲାଗିଛି, ରଙ୍ଗମଞ୍ଚରେ ନଟନଟୀମାନଙ୍କର ଉଲ୍ଲଙ୍ଗତା ଓ ଯୌନାଙ୍ଗ ପ୍ରଦର୍ଶନ ହେଉଛି ତାର ବିଳକ୍ଷଣ । କିନ୍ତୁ ଏ ଉଲ୍ଲଙ୍ଗତା ମଧ୍ୟରେ କେଉଁ ସତ୍ୟର ସନ୍ଧାନ ଅଛି ? ହୋଇପାରେ ଏହା ଆଜିର ସମାଜ ବିରୁଦ୍ଧରେ ଏକ 'ପ୍ରୋଟେଷ୍ଟ୍' । ହୋଇପାରେ—ଶତାବ୍ଦୀ ପରେ ଶତାବ୍ଦୀ ବ୍ୟାପୀ ଯୌନ-ନିଗ୍ରହ ବିରୁଦ୍ଧରେ ଏକ ବିଦ୍ରୋହ । କିନ୍ତୁ ସେଥିପାଇଁ କ'ଣ ପୂରାପୂରି ଲୁଗା ଫିଙ୍ଗିଦେବା ଦରକାର ?

(କଳିଙ୍ଗ)



# ଲେଖକର ରିକ୍ତତା

ଇଂରାଜୀ ଡିଟେକ୍‌ଟିଭ୍ ଉପନ୍ୟାସ ଲେଖିକା ଶ୍ରୀମତୀ ଆଗାଥା କ୍ରିଷ୍ଟୀଙ୍କର ଅଶୀ ବର୍ଷ ପୂର୍ଣ୍ଣ ହୋଇଗଲା । ସେ ତାଙ୍କର ଅଶୀତମ ଜନ୍ମଦିବସ ପାଳନ କଲେ ତାଙ୍କର ଅଶୀତିତମ ଉପନ୍ୟାସ ପ୍ରକାଶ କରି । ଏହା ମଧ୍ୟ ଏକ ଡିଟେକ୍‌ଟିଭ୍ ଉପନ୍ୟାସ···"ପାସେଞ୍ଜର ଟୁ ଫ୍ରାଙ୍କ ଫର୍ଟ ।" ବିଗତ ତ୍ରିଶାପୂ ଦଶକରୁ ଡିଟେକ୍‌ଟିଭ୍ ଉପନ୍ୟାସ ଲେଖା ଆରମ୍ଭ କରି ଆଜି ସୁଦ୍ଧା ତାଙ୍କର ଲେଖନୀ ରହିଛି ଯେପରି ଅଜସ୍ରସ୍ରାବୀ, ସେହିପରି ମଧ୍ୟ ଅବାରିତ । ଶ୍ରୀମତୀ କ୍ରିଷ୍ଟୀଙ୍କ ଲେଖାରୁ ଆୟ ମଧ୍ୟ କମ୍ ନୁହେଁ···ବାର୍ଷିକ ଏକ ଲକ୍ଷ ପାଉଣ୍ଡ : ଭାରତରେ ଖୁବ୍ କମ୍ ମହାରାଜା ଏ ପରିମାଣରେ ପ୍ରିଭି-ପର୍ସ ପାଉଥିଲେ । ପରିମାଣାତ୍ମକ ଓ ଆର୍ଥିକ ଦୃଷ୍ଟିରୁ ଏ ବିପୁଳ ସଫଳତା ସତ୍ତ୍ୱେ ଶ୍ରୀମତୀ କ୍ରିଷ୍ଟୀଙ୍କ ଲେଖକ ଜୀବନ କିନ୍ତୁ ବଡ଼ ରିକ୍ତ ଓ ଶୂନ୍ୟଗର୍ଭ । ନିଜର ଲେଖା ସମ୍ପର୍କରେ ଶ୍ରୀମତୀ କ୍ରିଷ୍ଟୀ ଲେଖିଛନ୍ତି—

: "I regard my work as of no importance. I have menely set out to entertain." (ମୋ ଲେଖାପ୍ରତି, ମୁଁ କୌଣସି ଗୁରୁତ୍ୱ ଦିଏ ନାହିଁ, କେବଳ ମନୋରଞ୍ଜନ ବ୍ୟତୀତ, ମୁଁ ଆଉ କିଛି କରିପାରି ନାହିଁ ।)

ସାହିତ୍ୟ ଓ ସାହିତ୍ୟିକର ପ୍ରକୃତ ନିୟାମକ ତେଣୁ ଆର୍ଥିକ ସଫଳତା ଅଥବା ପରିମାଣାତ୍ମକ ଦୃଷ୍ଟିରେ ନାହିଁ । ଆମେରିକାରେ ଲୋକପ୍ରିୟ 'କାରପେଟ-ବାଗର' ଉପନ୍ୟାସମାନଙ୍କରୁ ଲେଖକମାନେ ନିୟୁତ ନିୟୁତ ଡଲାର ଆୟ କରୁଥିବାବେଳେ ; ସେ ଦେଶର ଶୁଦ୍ଧ ସାହିତ୍ୟିକମାନେ ବୁଭୁକ୍ଷୁ ; ଲେଖକର ଚିରନ୍ତନ ଦାରିଦ୍ର୍ୟର ବୋଝ ମୁଣ୍ଡାଇ ସେମାନେ ଗ୍ଳାନିଥାନ୍ତି । ତଥାପି ସବୁ ଦେଶର, ସବୁ ଯୁଗର ଓ କାଳର ସାହିତ୍ୟ ଏଇମାନଙ୍କ ଅବଦାନରେ ଯେ ଗଠିତ ହୋଇଛି ତା ଅସ୍ୱୀକାର କରିବାର ଉପାୟ ନାହିଁ । କଥିତ ଅଛି ମିଲ୍‌ଟନ୍ ; ଇଂରାଜୀ ସାହିତ୍ୟର ଅମରକୃତି

"ପାଉଣ୍ଡାଇଜ ଲଷ୍ଟ"ର ସ୍ୱତ୍ୱ ପ୍ରକାଶକଙ୍କୁ ବିକ୍ରି କରିଥିଲେ, ମାତ୍ର ପଚିଶ ପାଉଣ୍ଡରେ । ବିଭିନ୍ନ ମଦ୍ୟଶାଳାରେ ସେକ୍‌ସପିୟରଙ୍କ ପାଖମଦ୍ୟ ମଦ ବିଲ୍ ତାଙ୍କ ନାଟକମାନଙ୍କ ରୟାଲଟୀରୁ ଉଠୁଥିଲା କି ନାହିଁ ସନ୍ଦେହ ! ବଙ୍ଗ କବି ମାଇକେଲ ତ ତାଙ୍କ କାବ୍ୟ ଓ ନାଟକରୁ ଔଷଧର ଖର୍ଚ୍ଚ ସୁଦ୍ଧା ଯୋଗାଡ଼ କରିପାରି ନ ଥିଲେ । ଉପନ୍ୟାସ ଛପାଇବାର ବିଲ୍ ଦେବା ପାଇଁ ଫକୀର ମୋହନଙ୍କୁ ଧାନ ବିକ୍ରି କରିବାକୁ ପଡ଼ୁଥିଲା । ତାଲିକା ଲମ୍ବାଇ ବସିଲେ ବହୁଦୂର ଲମ୍ବିଯିବ । 'ପପୁଲାରିଟି' ଓ ଆର୍ଥିକ ସଫଳତା ତେଣୁ ସାହିତ୍ୟର ନିଯ୍ୟାମକ ନୁହେଁ । କିମ୍ବା ସାହିତ୍ୟର ଦାୟିତ୍ୱ ମନୋରଞ୍ଜନ ନୁହେଁ । ତା ହୋଇଥିଲେ ଆଗାଥା କ୍ରୀଷ୍ଟୀଙ୍କ ପରି ଲେଖିକା ଏପରି ରିକ୍ତତା ଅନୁଭବ କରୁ ନ ଥାନ୍ତେ ।

କିନ୍ତୁ ସାହିତ୍ୟର ସ୍ୱରୂପ କ'ଣ ? ଏ ସମ୍ପର୍କରେ ବହୁ ସନ୍ଦର୍ଭ, ବହୁ ଗ୍ରନ୍ଥ ଲେଖାଯାଇଛି । ତଥାପି ଏହାର ଶେଷ ସମାଧାନ ମିଳିଛି ବୋଲି କହି ହେବ ନାହିଁ । ମଧ୍ୟଯୁଗରେ ସାହିତ୍ୟ ଥିଲା ଧର୍ମ ପ୍ରଚାରର ବଳୀବର୍ଦ୍ଦ । ସାଂପ୍ରତିକ କାଳରେ ଏହା, ରାଜନୀତି ଓ ସମାଜତନ୍ତ୍ର ଠାରୁ ଆରମ୍ଭ କରି ଯୌନତନ୍ତ୍ର ପର୍ଯ୍ୟନ୍ତ ବହୁଭାର ବହନକରି, ଲଦନ-ଟଟ୍ଟୁ ପରି ଚାଲିଛି । ସମାଜ ଓ ଜୀବନପ୍ରତି ସାହିତ୍ୟର ଗୋଟିଏ ଦାୟିତ୍ୱ ଅଛି, ଅସ୍ୱୀକାର କରିବାର ଉପାୟ ନାହିଁ । ମାତ୍ର ସାହିତ୍ୟ ଯେ ସମାଜଧର୍ମୀ ହେବାକୁ ବାଧ୍ୟ ; ନୀତି ପ୍ରଚାର ନ ରହିଲେ ସାହିତ୍ୟ ଯେ ଅଶୁଦ୍ଧ, ଅପୂର୍ଣ୍ଣ ହୋଇଯିବ, ଏପରି ଭାବିବା ମଧ୍ୟ ଉଚିତ ନୁହେଁ । ସୂର୍ଯ୍ୟୋଦୟର ଯେଉଁ ବର୍ଣ୍ଣଚ୍ଛଟା, ସେଥିରେ ସମାଜ ପ୍ରତି କି ଦାୟିତ୍ୱବୋଧ ରହିଛି ? ଫେନଚୂଡ଼ ଅଶାନ୍ତ ଲହରୀରେ ବା ଅଛି କି ନୀତି ପ୍ରଚାର ? ତଥାପି ଏ ସବୁ ବହୁ ସୌନ୍ଦର୍ଯ୍ୟ ଓ ସଦ୍‌ଭାବନାର ଉଦ୍‌ବୋଧକ । ସାହିତ୍ୟ ସେହିପରି ଉଦ୍‌ବୋଧନ ବା 'ଇଭୋକେଟିଭ୍' ବସ୍ତୁ । ସଂସ୍କୃତ ଅଳଂକାରିକମାନେ ଏହାକୁ କହିଛନ୍ତି ରସ ଓ ଭାବୋଦ୍ଦୀପନା । ଯେଉଁ ସାହିତ୍ୟରେ ଏ ରସ-କାନ୍ତି ନାହିଁ ; ତାହା ଆଉ ଯାହା ହେଉପଛେ ସାହିତ୍ୟ ନୁହେଁ । ଏହାର ଅଭାବ ଲେଖକଙ୍କୁ ସବୁ ସଫଳତା ସତ୍ତ୍ୱେ ଘୋର ରିକ୍ତ ଓ ନିଃସ୍ୱ କରିଥାଏ ।

❋❋ [କଳିଙ୍ଗ—୨୦ । ୯ । ୭୦]

# ଘୁରେ ସଂସ୍କୃତି

ଗଣ-କବି ଖେତାବ୍, କବି ବୈଷ୍ଣବ ପାଣିଙ୍କୁ ମିଳି ନ ଥିଲା କୌଣସି ଆକାଡେମୀ ଅଥବା ଦରବାରରୁ । ଏହା ଥିଲା ଓଡ଼ିଶାର ଆମ୍ ଜନତାର ଅନ୍ତରର ସ୍ୱୀକୃତି ; ତାର କବି ପ୍ରତି ସୋଚ୍ଚାର ଶ୍ରଦ୍ଧା-ନିବେଦନ । ମାତ୍ର କି ନିଷ୍ଠୁର ଉପେକ୍ଷା ମଧ୍ୟରେ ଏହି ବିଦ୍ରୋହୀ, ବିଦଗ୍ଧ ଜୀବନର ଅବସାନ ଘଟିଥିଲା ତାହା କବିଙ୍କର ନିମ୍ନୋକ୍ତ ଶେଷ କବିତାରୁ କେତେକାଂଶରେ ଅନୁମିତ ହେବ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ କବି—ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ "ନିମ୍ନଲିଖିତ ଚିଠିଟି ଶେଷଥର ପାଇଁ ପ୍ରେରଣ କରୁଛି । ଏଥିକୁ ଈଶ୍ୱର ହିଁ ଭରସା"—

"ସାନୁମାନ ଶୃଙ୍ଗେ
ଦେଇଣ ବସାଇ
ଆଜି ଦୁଃଖ ସ୍ରୋତେ
ଦେଉଛ ଭସାଇ ।

× × ×

ରକ୍ତଚାପ ବ୍ୟାଧି ଭୀଷଣ ଯାତନା
ବେଗି ବେଗି ସଦା
ହରଇ ଚେତନା
ଜଠର ଯନ୍ତ୍ରଣା କଠୋର ତାଠାରୁ
ନ ଯାଉଛି ସେହି
ଦୁର୍ଦ୍ଦଶା ମୋଠାରୁ
ବାରବାର ତୁମ୍ଭ ଦରଶନ ଆଶେ
ଯାଇଁ ପ୍ରଜାତନ୍ତ୍ରୁ
ଫେରୁଛି ନିରାଶେ ।

ଶତ ଶତ ବହି ଉତ୍କଳ ଭାଷାରେ
ଲେଖି ଭୋକେ ପଡ଼ି
ମରୁଛୁ ବସାରେ ।

× × ×

ସରକାର ବୃତ୍ତି
ଦେବେ ଦେବେ କହି
ଗଲାଣି ତ ବାରମାସ
ଆସି ବହି ।"
ଇତ୍ୟାଦି

ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ଏବଂ ପ୍ରତିଶ୍ରୁତି ବୃତ୍ତି ପାଇବା ପର୍ଯ୍ୟନ୍ତ ଅପେକ୍ଷା କରି ଗଣକବି ଆଉ ବଞ୍ଚି ନ ଥିଲେ । ଅର୍ଦ୍ଧାଶନ, ଅନଶନ ଓ ପ୍ରାୟ ବିନା ଚିକିତ୍ସାରେ ତାଙ୍କ ବୟୋଗାନ୍ତ ଜୀବନର ସମାପ୍ତି ଘଟିଥିଲା । ଆଜି ତାଙ୍କ ଜୟନ୍ତୀ-ଉତ୍ସବ, ଗୀତିନାଟ୍ୟ ଅଭିନୟ ଓ ସ୍ମୃତିସଭା ପାଇଁ ଯେତିକି ଚାନ୍ଦା ଉଠୁଛି, ଯେତେ ଅର୍ଥ ବ୍ୟୟ ହେଉଛି, ତାହାର ଗୋଟିଏ ଭଗ୍ନାଂଶ, କବି ଜୀବଦ୍ଦଶାରେ ସମାଜଠାରୁ ପାଇ ପାରିଥିଲେ ଜଠର ଯନ୍ତ୍ରଣା-ଜର୍ଜରିତ ତାଙ୍କର ଶେଷ ଦିବସ ଗୁଡ଼ିକ ଏତେ ନିଷ୍କରୁଣ ହୋଇ ନ ଥାନ୍ତା—ଏଥିରେ ସନ୍ଦେହ ନାହିଁ ।

ମୁଁ ଲକ୍ଷ୍ୟ କରିଛି, ଓଡ଼ିଶାରେ ଦେବୀ ଆବାହନ ଅପେକ୍ଷା ବିସର୍ଜନ ବେଳଟା ଅଧିକ ଉତ୍ସବ—ମୁଖରିତ । ବିସର୍ଜନୀ ପଟୁଆର ସେଥିପାଇଁ ଯେତିକି ପ୍ରମତ୍ତ, ଆବାହନୀ ନବ-ପତ୍ରିକା-ସ୍ନାନର ଶୋଭାଯାତ୍ରା ସେତିକି ନୀରବ ଓ ନିରୁତ୍ସବ । ଏହି ସୂତ୍ରଧରି ଗଣକବି ବୈଷ୍ଣବ ପାଣିଙ୍କ ଉପେକ୍ଷିତ ଜୀବନ ସହିତ ମୃତ୍ୟୁ ପରେ ତାଙ୍କ ଉଦ୍ଦେଶ୍ୟରେ ଆୟୋଜିତ ସ୍ମୃତି ପୂଜାର ବିପୁଳ ସମ୍ଭାର ତୁଳନା କରି କେହି ତେଣୁ ବିସ୍ମିତ ହେବା ଉଚିତ ନୁହେଁ । ତଥାପି କଳା ଓ ସାହିତ୍ୟ ପ୍ରତି ଆମ ସମାଜରେ ଶ୍ରଦ୍ଧା ଓ ସଂବେଦନଶୀଳତାର ଯେଉଁ ଅଭାବ ରହିଛି ତାର ଶୋଚନୀୟ ଦୈନ୍ୟ ସଂପର୍କରେ ଆମ୍ଭେମାନେ ସଚେତନ ହୋଇ ପାରିଲେ, ଆମ୍ଭମାନଙ୍କ ସାଂସ୍କୃତିକ ଓ ସାମାଜିକ ଜୀବନର ଗୁଣାତ୍ମକ ସ୍ତର କେତେକାଂଶରେ ଉନ୍ନତ ହୋଇପାରନ୍ତା ।

ଗଣକବି ତାଙ୍କ ଜୀବଦ୍ଦଶାରେ ଅତ୍ୟନ୍ତ ଆଦୃତ ଥିଲେ ଗ୍ରାମ୍ୟ ସମାଜରେ । ବିଦଗ୍ଧମଣ୍ଡଳୀରେ କିନ୍ତୁ ତାଙ୍କର ପ୍ରତିଷ୍ଠା ନ ଥିଲା । ବିଶ୍ୱବିଦ୍ୟାଳୟ ସ୍ତରରେ ତାଙ୍କ ସମ୍ପର୍କରେ ଆଲୋଚନା ଗବେଷଣା ତ ଥିଲା କଳ୍ପନାତୀତ । ମାତ୍ର ଆଜି ତାଙ୍କର ମୃତ୍ୟୁର ବର୍ଷ ପନ୍ଦରଟା ମଧ୍ୟରେ ସେ ପ୍ରବଳ ଭାବରେ ସମ୍ମାନିତ ହୋଇଛନ୍ତି ସହରର ବିଦଗ୍ଧ ସମାଜ ମଧ୍ୟରେ । ଏକ ଦିଗରେ ଉଦ୍ଭଟ-ନାଟକ ଓ ବିପର୍ଯ୍ୟୟ-ନାଟକ (ଆଣ୍ଟି-ଥିଏଟର) ମୋହ ଯେତିକି ବ୍ୟାପୁଛି, ଅପର ଦିଗରେ ବୈଷ୍ଣବ ପାଣିଙ୍କ ଗୀତାଭିନୟ ପ୍ରତି ଆକର୍ଷଣ ମଧ୍ୟ ସେତିକି ବୃଦ୍ଧି ପାଉଛି । ଏକ୍ସ-ପେରିମେଣ୍ଟେସନ୍‌ର ମୋହ ଆମକୁ ଟାଣୁଛି ପାଶ୍ଚାତ୍ୟର 'ଅଫ୍-ବିଟ୍' ମଞ୍ଚ ଓ ନାଟକ ଆଡ଼େ । ଏଣେ ଆମ ସାଂସ୍କୃତିକ ଅବଚେତନ ଆମକୁ ଆକର୍ଷଣ କରି ଚାଲିଛି, ଆଦ୍ୟ ଯୁଗର ପ୍ରାକୃତ (unsophisticated) ଗୀତାଭିନୟ ଓ ମୁକ୍ତ ମଞ୍ଚ ଭିତରକୁ ।

ଏହାର ନେପଥ୍ୟରେ ଲୋକ ସଂସ୍କୃତି ଓ ବିଦଗ୍ଧ ସଂସ୍କୃତି ମଧ୍ୟରେ ଆକର୍ଷଣ ବିକର୍ଷଣର ଯେଉଁ ରହସ୍ୟ ରହିଛି, ତାହା ବାସ୍ତବିକ ଏକ ଲକ୍ଷ୍ୟଣୀୟ ବିଷୟ । ବିଦଗ୍ଧ ସଂସ୍କୃତି ସୀମିତ ଥାଏ ମୁଷ୍ଟିମେୟଙ୍କ ସୌଖୀନ ମଞ୍ଚ, ସଂଘ, ଗୋଷ୍ଠୀ ଅଥବା ସମିତିର ଚତ୍ୱର-ଗମ୍ଭୀର ପରିସର ଓ ତାହାକୁ କେନ୍ଦ୍ର କରି କ୍ଷୁଦ୍ର କ୍ଷୁଦ୍ର ଅନୁଷ୍ଠାନ ମଧ୍ୟରେ । କିନ୍ତୁ ଗଣ-ସଂସ୍କୃତି ପ୍ରସାରିତ ହୋଇପଡ଼େ ମୁକ୍ତ ରାଜପଥରେ, ରାମଲୀଳା, ଯାତ୍ରା ଓ ପାଲା ପରି ସାର୍ବଜନୀନ ଅନୁଷ୍ଠାନମାନଙ୍କ ମଧ୍ୟରେ । ଅର୍ଥାତ୍ ଜୀବନ ଓ ସଂସ୍କୃତି ସେଠାରେ ଏକ ହୋଇ ଅଦ୍ୱିତୀୟତା ଲାଭ କରେ । ଜନଜୀବନର ମହା-ପ୍ରବାହ ଓ ସଂସ୍କୃତି ସହିତ ବିଦଗ୍ଧ ସଂସ୍କୃତିର କିନ୍ତୁ କୌଣସି ସମ୍ପର୍କ ନାହିଁ । ଆତ୍ମନିର୍ବାସନର ନିଃସଙ୍ଗତା ମଧ୍ୟରେ ନାନା ଉଦ୍‌ଭଟ 'ଏକ୍ସ-ପେରିମେଣ୍ଟେସନ୍'ରେ ଏହା ଯେତେବେଳେ କ୍ଳାନ୍ତ ହୋଇଉଠେ, ସେତେବେଳେ ନୂତନ ପ୍ରେରଣା ଓ ଉଜ୍ଜୀବନ ପାଇଁ ତାହା ପୁଣି ଫେରି-ଆସେ ସେହି ଗଣ ସଂସ୍କୃତି ଭିତରକୁ । ଚିତ୍ରକଳା ଏହି ସୂତ୍ରରେ ଫେରି ଆସିଛି ସେହି ଗହ୍ୱର-ଯୁଗର ଆଦିମ ଚିତ୍ରାଙ୍କନ ରୀତିକୁ । ମଞ୍ଚମୋହ ପରିହାର କରି ନାଟକ ପୁଣି ଫେରିଯାଇଛି ମୁକ୍ତାକାଶ ତଳର ଗୀତିନାଟ୍ୟ ସମାଜକୁ । ଆଧୁନିକ କବିତାରେ ମଧ୍ୟ ଆର୍ଚିଟାଇପ୍ (archetype)

ସନ୍ଧାନରେ ଚାଲିଛି ପୁରାଣରେ ପ୍ରବଳ ମନ୍ଥନ । ଏହାର ଅର୍ଥ ଏପରି ନୁହେଁ ଯେ, ବିଦଗ୍ଧ ସଂସ୍କୃତିର ପରିଣତି ପ୍ରାକୃତ ଲୋକସଂସ୍କୃତି । କିନ୍ତୁ ବିଦଗ୍ଧ ସଂସ୍କୃତି ଲୋକ ସଂସ୍କୃତିକୁ ଆଶ୍ରୟ କରି, ଏହାକୁ ଆହୁରି ମାର୍ଜିତ ଓ ପରିପୁଷ୍ଟ କରିବା ସଙ୍ଗେ ସଙ୍ଗେ, ନିଜକୁ ଗଣଜୀବନର ଅଧିକତର ନିକଟବର୍ତ୍ତୀ କରିଥାଏ । ଲୋକ ସଂସ୍କୃତି ଓ ବିଦଗ୍ଧ ସଂସ୍କୃତିର ଦୁଇ ସମାନ୍ତରାଳ ଧାରା ଏକାଠି ମିଶି, ଜାତୀୟ ସଂସ୍କୃତିର ମହାନନ୍ଦୀରେ ପରିଣତ ହୋଇଥାଏ । ଏହି ସୂତ୍ରରେ ପଲ୍ଲୀ ଯାତ୍ରାଦଳର ଗଣକବି ବୈଷ୍ଣବ ପାଣି ଆମ୍ଭମାନଙ୍କର ବିଦଗ୍ଧ ସାଂସ୍କୃତିକ ଓ ସାହିତ୍ୟିକ ଚେତନାରେ ସୁପ୍ରତିଷ୍ଠିତ ହୋଇ ଜାତୀୟ ସଂସ୍କୃତିରେ ଆଜି ସପିଣ୍ଡୀକୃତ ହୋଇପାରି ଅଛନ୍ତି—ଅର୍ଥାତ୍ ସେ ଅମର ହୋଇ ଅଛନ୍ତି ।

(କଳିଙ୍ଗ—୧୭-୧୦-୭୯)



# ରାଷ୍ଟ୍ର ଓ ଲେଖକ

ସାହିତ୍ୟ ଜଗତରେ ସର୍ବାଧିକ କାମ୍ୟ, ଶ୍ରେଷ୍ଠ ଉପାଧିନ, ସ୍ୱେଡେନ୍-ଆକାଡେମୀର "ନୋବେଲ ପୁରସ୍କାର" ଏ ବର୍ଷ ପାଇଛନ୍ତି, ସୋଭିଏଟ୍ ଔପନ୍ୟାସିକ ଆଲେକ୍‌ଜାଣ୍ଡାର ସୋଲ୍‌ଝେନିତ୍‌ସିନ୍—ଋଷୀୟ ସାହିତ୍ୟର ଅଲଙ୍ଘନୀୟ ପରମ୍ପରାକୁ ଅନୁସରଣ କରିବାରେ, ସେ ଯେଉଁ ନୈତିକ ଶକ୍ତିର ପରିଚୟ ଦେଇଛନ୍ତି···"For the ethical force with which he has persned the indispensble traditions of Russian literature."

ପାଶ୍ଚାତ୍ୟ ପ୍ରାଚ୍ୟ ନିର୍ବିଶେଷରେ କୌଣସି ଦେଶ ବା ସମାଜରେ, ସାହିତ୍ୟ ଯଦି ଏକ ଅପ୍ରତିରୋଧ ଶକ୍ତି ରୂପେ ବିବେଚିତ ହୋଇଥାଏ, ତା'ହେଲେ ତାହା ହେଲା—ସୋଭିଏଟ୍ ରୁଷିଆ ! ଔପନ୍ୟାସିକ ସୋଲଝେନିତ୍‌ସିଙ୍କ "The first circle" ଉପନ୍ୟାସରେ ଲେଖକର ଏହି ଭୂମିକା ସମ୍ପର୍କରେ ଲେଖିଛନ୍ତି···"For a country to have a great writer is like having another government. That is why no regime has ever loved great writers ; only minor ones" ( କୌଣସି ଦେଶରେ କୌଣସି ମହାନ୍ ଲେଖକଙ୍କ ଆବିର୍ଭାବ ଘଟିଲେ ଯେପରି ଏକ ନୂତନ ରାଷ୍ଟ୍ରଶକ୍ତିର ଅଭ୍ୟୁଦୟ ଘଟିଥାଏ । ସେଥିପାଇଁ କୌଣସି ଶାସକଗୋଷ୍ଠୀ ଗୌଣ ଲେଖକମାନଙ୍କ ବ୍ୟତୀତ, କେବେ କୌଣସି ମହାନ୍ ଲେଖକମାନଙ୍କ ପ୍ରତି ଶ୍ରଦ୍ଧାଶୀଳ ହୋଇପାରି ନ ଥାନ୍ତି ।")

କାନସର୍‌ର ଆକ୍ରମଣରୁ ସଦ୍ୟ ଆରୋଗ୍ୟ ଲାଭ କରିଥିବା ପ୍ରୌଢ଼ ୫୨ ବର୍ଷ ବୟସ୍କ ( ଜନ୍ମ-୧୧, ଡିସେମ୍ବର, ୧୯୧୮ ) ଆଲେକ୍‌ଜାଣ୍ଡାର ସୋଲ୍‌ଝେନିତ୍‌ସିନ୍, ବର୍ତ୍ତମାନ ସୋଭିଏଟ ରୁଷିଆର ରାଷ୍ଟ୍ରନାୟକ ଲିଓନିଡ୍

ବ୍ରେଜେନଭ୍ ଓ ଆଲେକ୍‌ସି କୋସିଆଜନ୍‌ଙ୍କ ପକ୍ଷରେ ମଧ୍ୟ ଏକ ଦୁଃଶ୍ଚିନ୍ତାର କାରଣରେ ପରିଣତ ହୋଇଅଛନ୍ତି । ଏବେ ସୋଲ୍‌ଝେନିତ୍‌ସିନ୍ ସୋଭିଏଟ ରୁଷିଆରୁ ବିତାଡ଼ିତ ହେବେ, କିମ୍ବା ସୋଭିଏଟ୍ ରିପବ୍ଲିକ୍ ଦଣ୍ଡବିଧି ଆଇନ୍‌ର ୭୦ ଦଫାରେ (ସୋଭିଏଟ୍ ବିରୋଧୀ ସାହିତ୍ୟ ପ୍ରଚାର) ଅଭିଯୁକ୍ତ ହୋଇ, ସାତବର୍ଷ କାରାଦଣ୍ଡ ଭୋଗ କରିବେ, ଅଥବା ଆସନ୍ତା ଡିସେମ୍ବର ମାସ ୧୦ ତାରିଖ ଦିନ ଷ୍ଟକ୍‌ହୋମରେ ଉପସ୍ଥିତ ହୋଇ ନୋବେଲ-ପୁରସ୍କାର ଗ୍ରହଣ କରିବାରୁ ବଞ୍ଚିତ ହେବେ, ତାହା ବର୍ତ୍ତମାନ ପାଇଁ ସାହିତ୍ୟିକ ଓ ରାଜନୈତିକ ମହଲରେ କଳ୍ପନା ଜଳ୍ପନାର ବିଷୟବସ୍ତୁ ହୋଇ ରହିବ ।

ବସ୍ତୁତଃ ୧୯୫୮ ସାଲ୍‌ରେ "ଡକ୍ଟର ଜିଭାଗୋ" ଉପନ୍ୟାସର ଲେଖକ ବୋରିସ୍ ପାଷ୍ଟରନାକ୍ ନୋବେଲ-ପୁରସ୍କାର ଗ୍ରହଣ କରିବାରୁ ବଞ୍ଚିତ ହୋଇଥିଲେ । ସେତେବେଳେ "ପାର୍ଟି ଲାଇନ୍"ର ଲେଖକଗୋଷ୍ଠୀ ପାଷ୍ଟରନାକ୍‌ଙ୍କୁ ଭର୍ତ୍ସିତ କରିଥିଲେ, "ସେ ଏକ ଘୁଷୁରି, ଯିଏ ନିଜ ଖାଇବା ସ୍ଥାନକୁ ଦୂଷିତ କରିଥାଏ !" ରାଷ୍ଟ୍ରୀୟ ନିଷେଧ ହେତୁ, ପାଷ୍ଟରନାକ୍ ସୋଭିଏତ୍ ରୁଷିଆ ଛାଡ଼ି, ନୋବେଲ-ପୁରସ୍କାର ଗ୍ରହଣ ପାଇଁ, ଷ୍ଟକହୋମ୍ ଆସିପାରି ନ ଥିଲେ । ତାଙ୍କର ଆଶଙ୍କା ଥିଲା, ପ୍ରଣୟିନୀ ଓଲ୍‌ଗା ଇଭନ୍‌ସକାୟା (ଡକ୍ଟର ଜିଭାଗୋ ଉପନ୍ୟାସର ଲରା ଚରିତ୍ର)ଙ୍କ ପାଇଁ । ମାତ୍ର ସୋଲଝେନିତ୍‌ସିନ୍‌ଙ୍କର ସେପରି କିଛି ବାଧା ବନ୍ଧନ ନାହିଁ । ଷ୍ଟକ-ହୋମକୁ ଆସି ପୁରସ୍କାର ଗ୍ରହଣ କରିବା ପାଇଁ, ସେ ବେଶ୍ ସୁସ୍ଥ ସବଳ ଅଛନ୍ତି ବୋଲି, ସୋଲଝେନିତ୍‌ସିନ୍ ଘୋଷଣା କରିସାରିଛନ୍ତି । କିନ୍ତୁ ଇତି ମଧ୍ୟରେ ତାଙ୍କ ମୁଣ୍ଡ ଉପରକୁ ଓହ୍ଲାଇ ଆସିଲାଣି, ଭର୍ତ୍ସନା ଓ ନିନ୍ଦାବାଦର ଝଡ଼ । ରାଷ୍ଟ୍ରାୟତ୍ତ "ସୋଭିଏତ୍ ରାଇଟରସ୍ ୟୁନିଅନ" ନୋବେଲ ପୁରସ୍କାର ପାଇଁ ସୋଲଝେନିତ୍‌ସିନ୍‌ଙ୍କୁ ଅଭିନନ୍ଦନ କରିବା ପରିବର୍ତ୍ତେ, ତାଙ୍କ ନୋବେଲ ପୁରସ୍କାର ପ୍ରାପ୍ତିର କଠୋର ନିନ୍ଦାବାଦ କରି ଏହାକୁ ଘୋଷଣା କଲେଣି··· "An unseemly game" ("ଅବାଞ୍ଛିତ ଖେଳ !")

ସୋଲଝେନିତ୍‌ସିନ୍‌ଙ୍କର ଅପରାଧ—ସେ ଗୃହୀତ୍ନାନ୍ତି, ସତ୍ୟର ପ୍ରକାଶ ପାଇଁ ଲେଖକର ଅବାରିତ ଅଧିକାର । ବସ୍ତୁତଃ ଆଜି ସୋଭିଏତ୍ ସାହିତ୍ୟରେ

Dissent ବା ପ୍ରତିବାଦର ଯେଉଁ ସ୍ୱର ଶୁଣାଯାଏ, ସୋଲଝେନିତ୍ସିନ ତା'ର ପ୍ରେରଣାଦାତା । ରୁଷିଆନ ସାହିତ୍ୟରେ ଗୀତି ଅପେକ୍ଷା ରସ ଓ ଭାବର ପରମ୍ପରା ଅତି ବଳିଷ୍ଠ । ରାଷ୍ଟ୍ର ଓ ସମାଜ ଗଠନରେ, ପୁଣି ଏହାର ଶତ ସ୍ୱୈରାଚାର ଓ ଅନାଚାରର ପ୍ରତିରୋଧରେ, ସାହିତ୍ୟର ବିଶେଷତଃ ଉପନ୍ୟାସର ଭୂମିକା ରୁଷିଆରେ ମାନ୍ୟତାପ୍ରାପ୍ତ ହୋଇଅଛି । ରୁଷିଆରେ ଲେଖକଗୋଷ୍ଠୀ ହିଁ ଦେଶ ଓ ଜାତିର ବିବେକ ବୋଲି ବିବେଚିତ ହୋଇଥାନ୍ତି । ଟଲଷ୍ଟୟ, ପୁଷ୍କିନ୍, ଗର୍କି, ପାଷ୍ଟରନାକ୍ ପ୍ରମୁଖଙ୍କ ସାହିତ୍ୟ ଏକ ସାମନ୍ତରାଳ ରାଷ୍ଟ୍ରଶକ୍ତି ରୂପେ, ରୁଷିଆର ଜନ-ସମାଜକୁ ପ୍ରଭାବିତ କରିଆସିଛି । ସୋଲଝେନିତ୍ସିନଙ୍କ ସାହିତ୍ୟ ସେହି ପରମ୍ପରା ଅନୁସରଣ କରିଅଛି ମାତ୍ର ।

ସୋଲ୍ ଝେନିତ୍ସିନ୍‌ଙ୍କର ତିନିଖଣ୍ଡି ଉପନ୍ୟାସ : One Day in the life of Denisovich. (ଡେନିସୋଭିଚର ଜୀବନରେ ଗୋଟିଏ ଦିନ) Cancer ward (କ୍ୟାନସର ଓ୍ୱାର୍ଡ଼) ଓ The first circle (ପ୍ରଥମ ବୃତ୍ତ)—ସୋଲଝେନିତ୍ସିନ୍‌ଙ୍କର ଏହି ତିନୋଟି ଉପନ୍ୟାସରେ, ଷ୍ଟାଲିନ୍‌ଙ୍କ ଦୁର୍ଦ୍ଧର୍ଷ, ରକ୍ତମୁଖା ଡିକ୍‌ଟେଟରସିପ୍‌ର ଅନ୍ଧକୂପ ମଧ୍ୟରେ ସୋଭିଏତ୍ ରୁଷିଆରେ ଜନଜୀବନର ଅତ୍ୟାଚରିତ ସ୍ଥିତି ଓ ଦୁର୍ଗତି ଉପନ୍ୟାସ-ମାନଙ୍କରେ ଅତି ମର୍ମସ୍ପର୍ଶୀ ଭାବରେ ରୂପାୟିତ ହୋଇଅଛି । ସୋଭିଏତ୍ ରୁଷିଆର ସାଂପ୍ରତିକ ରାଷ୍ଟ୍ରମୁଖ୍ୟମାନଙ୍କ ଦୃଷ୍ଟିରେ ଏସବୁ ନିତାନ୍ତ ନିନ୍ଦନୀୟ ହୋଇପାରେ, କିନ୍ତୁ "ଡେନିସୋଭିଚର ଜୀବନରେ ଗୋଟିଏ ଦିନ" ଉପନ୍ୟାସରେ ଉଚ୍ଛ୍ୱସିତ ପ୍ରଶଂସା କରି, ୧୯୬୨ ସାଲରେ କ୍ରୁଶ୍ଚେଭ କହିଥିଲେ..." × × × ସ୍ୱୈରାଚାର ଓ କ୍ଷମତାର ଅପବ୍ୟବହାର ସମ୍ପର୍କରେ ଏ ସବୁ ତଥ୍ୟ ଧୈର୍ଯ୍ୟର ସହିତ ବିଶ୍ଳେଷଣ କରିବା ଆମ-ମାନଙ୍କର କର୍ତ୍ତବ୍ୟ ହେବା ଉଚିତ । ଆମର ଦଳ ଓ ଦେଶବାସୀଙ୍କ ସମ୍ମୁଖରେ ଆମେ ଅକପଟ ଭାବରେ, ଯାହାର ସତ୍ୟ, ତାହା ଘୋଷଣା କରିବା ଆବଶ୍ୟକ । ତା' ହେଲେ ଏ ସବୁର ପୁନରାବୃତ୍ତି ହୁଏତ ଆଉ ଘଟିବ ନାହିଁ ।"

ମାତ୍ର କମ୍ୟୁନିଷ୍ଟ-ପାର୍ଟି-କଂଗ୍ରେସର ବିଂଶତିତମ ଅଧିବେଶନ ପରେ ଷ୍ଟାଲିନ୍‌ପନ୍ଥୀ ମତାନ୍ଧତା, ଏକଛତ୍ରବାଦ ଓ ବନ୍ଧନଗ୍ରସ୍ତ 'ରେଜିମେଣ୍ଟେଡ୍'

ଚିନ୍ତା ବିରୁଦ୍ଧରେ ମୁକ୍ତ ଓ ଉଦାରତାର ଯେଉଁ ସ୍ପନ୍ଦନ ପ୍ରକାଶ ପାଇଥିଲା ତାହା କ୍ରମେ ବୋଧହୁଏ ନିଷ୍ପ୍ରଭ ହୋଇଗଲାଣି । ସେଥିପାଇଁ ସାହିତ୍ୟିକର କଠୋର ସତ୍ୟକଥନ ଓ ତାହାର ଅବାଧ ପରିପ୍ରକାଶକୁ ନୀରବ କରାଇ ସାହିତ୍ୟକୁ ରାଷ୍ଟ୍ର-ପ୍ରଶସ୍ତି ସହିତ ସମୀକୃତ କରିବା, ଆଜି ରାଷ୍ଟ୍ର ପରିଚାଳିତ ସୋଭିଏତ୍ ଲେଖକ ଗୋଷ୍ଠୀଙ୍କର ସାହିତ୍ୟାଦର୍ଶରେ ପରିଣତ ହୋଇଛି ! ପଶ୍ଚିମର ଲେଖକମାନେ ସେମାନଙ୍କର ରାଷ୍ଟ୍ର ଓ ସମାଜର ଶତ ବିକୃତି, ଅନ୍ତରଞ୍ଜିତ ଭାବେ ସୁଦ୍ଧା ଘୋଷଣା କରିବା ପାଇଁ ଯଦି କୁଣ୍ଠିତ ହେଉ ନାହାନ୍ତି ; ରାଷ୍ଟ୍ର ସେଥିରେ ଯଦି କୌଣସି ପ୍ରତିବନ୍ଧକ ସୃଷ୍ଟି କରୁ ନାହିଁ— ତା'ହେଲେ ସୋଭିଏତ୍ ରୁଷିଆରେ ଅବାଧ, ବନ୍ଧନହୀନ ସାହିତ୍ୟ ପ୍ରତି ଅହେତୁକ ସ୍ପର୍ଶାତୁରତାର ଅର୍ଥ ବାସ୍ତବିକ ବୁଝିହୁଏ ନାହିଁ ! ···ତଥାପି ଆଶାର ବିଷୟ, ଆଲେକ୍‌ଜାଣ୍ଡାର ସୋଲଜେନିତ୍ସିନଙ୍କ ପରି ଲେଖକ ଆଜି ମଧ୍ୟ ଅଛନ୍ତି, ଯିଏ ଘୋଷଣା କରିପାରନ୍ତି···"ସତ୍ୟ କଥନ ପାଇଁ ମୃତ୍ୟୁବରଣ କରିବାକୁ ସୁଦ୍ଧା ମୁଁ କୁଣ୍ଠିତ ନୁହେଁ ।"

(କଳିଙ୍ଗ—୨୫-୧୦-୭୦)



# ଲେଖକ ଓ ପାଠକ

"ଆଜିର ସମାଜରେ ସାହିତ୍ୟର 'ରେଲଭାନ୍‌ସ' (relevance) ଉପଯୋଗିତା ଅଛି କି ?" ...ଜଣେ ତରୁଣ ବନ୍ଧୁ ଏକ ପତ୍ରରେ ଏହି ମୌଳିକ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି ।

ସାହିତ୍ୟ କ୍ରମେ ଯେପରି 'ଇରେଲଭେଣ୍ଟ୍' ଅବାନ୍ତର ହୋଇ ଉଠୁଛି; ପାରିପାର୍ଶ୍ୱିକ ପରିସ୍ଥିତି ଓ ଆଜିର ଜନସମାଜର ମେଜାଜ୍ ପ୍ରତି ଦୃଷ୍ଟି ଦେଲେ, ସେଥିରେ ଆଉ ସନ୍ଦେହ ରହେ ନାହିଁ । କିନ୍ତୁ ଏଥିପାଇଁ ଦାୟୀ କିଏ ? ସାହିତ୍ୟ ନା ସମାଜ ? ସାହିତ୍ୟ ଯଦି ସମାଜର ମେଜାଜ୍ ସହିତ ଖାପ ଖାଇ ନ ପାରେ, ତା ହେଲେ ସେପରି ସାହିତ୍ୟରେ ହୁଏତ କାଳୋତ୍ତୀର୍ଣ୍ଣତା ଥାଇପାରେ—ମାତ୍ର ସାଂପ୍ରତିକ ସମାଜ ଉପରେ ତାହା କୌଣସି ରେଖାପାତ କରିପାରିବ ନାହିଁ । ଆଜିର ସାହିତ୍ୟରେ କିନ୍ତୁ ସାଂପ୍ରତିକ ମେଜାଜ୍‌ର ପ୍ରତିଧ୍ୱନି ଯେପରି ବିରଳ, ଜନଜୀବନର ପ୍ରତିଛବି ମଧ୍ୟ ସେହିପରି ଅସ୍ପଷ୍ଟ ! ସେଥିପାଇଁ ଆଜିର ସମାଜରେ ସାହିତ୍ୟ, ପ୍ରାସଙ୍ଗିକ ଉପଯୋଗୀତା ହରାଇ ବସୁଥିବାରେ ବିସ୍ମିତ ହେବାର କିଛି ନାହିଁ । ଏହା କେବଳ ଆଙ୍ଗିକର ଚମତ୍କାରିତା ଉପରେ ତିଷ୍ଠି ରହୁଛି ।

ଇଂରାଜୀ-ସାହିତ୍ୟର ଜଣେ ପ୍ରବୀଣ ଅଧ୍ୟାପକ ବନ୍ଧୁଙ୍କୁ ପଚାରୁଥିଲି... ସାଂପ୍ରତିକ ଯୁବ ସମାଜର ସାହିତ୍ୟରୁଚି କିପରି ? ସେ ଉତ୍ତର ଦେଲେ... "ଏବେ ସାହିତ୍ୟ ଚର୍ଚ୍ଚା କରିବା ପାଇଁ ସମୟ ବା ଅଛି କାହାର ?" ମସ୍ତାନି, ନେତୃତ୍ୱ, ସ୍ଲୋଗାନ୍, ବିକ୍ଷୋଭ ଆଜିର ଯୁବଜୀବନକୁ ଏପରି ସର୍ବୋତଭାବରେ ଆଚ୍ଛନ୍ନ କରି ରଖିଛି ଯେ, ସେଥିରେ ସାହିତ୍ୟର ସ୍ଥାନ ନାହିଁ । କିନ୍ତୁ ସାହିତ୍ୟରେ ଯଦି ସାଂପ୍ରତିକ ଜୀବନର ଠିକ୍ ଏଇସବୁ ବିଳୟ ଓ ବିକୃତି ପ୍ରତିଧ୍ୱନିତ ନ ହୁଏ, ତା ହେଲେ ଆଜିର ପାଠକ ସମାଜ

ସେ ସାହିତ୍ୟ ପ୍ରତି ଦୃକ୍‌ପାତ କରିବାକୁ ଯିବ ବା କାହିଁକି ? ଆନ୍ତରିକତା-ହୀନ ମିତିବାଦର ସ୍ଲୋଗାନ୍ ପ୍ରତି ଏ ଯୁଗର ଯୁବସମାଜ ବଡ଼ ଆସ୍ଥାହୀନ !

ସାମ୍ପ୍ରତିକ ଭାରତୀୟ ସାହିତ୍ୟ ଊଣାଅଧିକେ ସୀମିତ ରହିଛି ଆଜିକର ନିତ୍ୟ-ନୂତନ ଚିଠକ୍‌ଦାର ପରୀକ୍ଷା ଓ କକ୍ଷଚ୍ୟୁତି, ନିଃସଙ୍ଗତା, ଶୂନ୍ୟତାବୋଧ ପ୍ରଭୃତି କେତେକ ନିଛକ ମାନସିକ ବିଳାସ ମଧ୍ୟରେ । ଏ ସବୁ ନେଇ ଗଳ୍ପ, ଉପନ୍ୟାସ ଓ କବିତାର ଫସଲ ମଧ୍ୟ ସୁପ୍ରଚୁର । କିନ୍ତୁ କଲିକତାରେ ଯେଉଁମାନେ ଟ୍ରାମ୍ ପୋଡ଼ୁଛନ୍ତି, ବୋମା ଫିଙ୍ଗୁଛନ୍ତି, ମସ୍ତାନି କରୁଛନ୍ତି, ବା କଟକ ଷ୍ଟାଡିୟମରେ ପହିଲମାନ ଲଢ଼େଇ ବେଳେ ଯେଉଁମାନେ ଦକ୍ଷଯଜ୍ଞ ଭଙ୍ଗ କଲେ କିମ୍ବା ଓଡ଼ିଶା—୭୦ ପ୍ରଦର୍ଶନୀର ଉଦ୍‌ଘାଟନ ଯେଉଁମାନଙ୍କ ବିକ୍ଷୋଭରେ ଭଣ୍ଡୁର ହୋଇଗଲା, ଯେଉଁମାନେ ହିପ୍‌ନୋଜେନ୍ ବଟିକା ଖାଇ କଫି ହାଉସ୍‌ରେ ଘଣ୍ଟା ପରେ ଘଣ୍ଟା ବସି ରହୁଛନ୍ତି, ଅଥବା ପରୀକ୍ଷାରେ କପି କରିବାର "ମୌଳିକ" ଦାବୀରେ ଯେଉଁମାନେ ସୋଚ୍ଚାର, ଇତ୍ୟାଦି ଇତ୍ୟାଦି ; ସେମାନଙ୍କ ପ୍ରତି ଏ ସାହିତ୍ୟର କି ଆବେଦନ ରହିଛି ? ସାହିତ୍ୟ ଯଦି ଏମାନଙ୍କୁ ରୁଚିଭ୍ରଷ୍ଟ ନଷ୍ଟଗାମୀ ଜ୍ଞାନ କରି, ଏମାନଙ୍କ ପ୍ରତି ଆଖିବୁଜି ଦେଇ, ଆତ୍ମ ସହାନୁଭୂତିରେ ନିମଜ୍ଜିତ ରହି, ଅକାରଣରେ କେବଳ ହା-ହୁତାଶ କରେ, ତାହାହେଲେ ଏମାନେ ମଧ୍ୟ ସାହିତ୍ୟ ପ୍ରତି ଆଖି ବୁଜିଦେଲେ ବିସ୍ମିତ କିମ୍ବା ବ୍ୟଥିତ ହେବା ପାଇଁ କ'ଣ ଅଛି ?

ଏମାନଙ୍କର ମଧ୍ୟ ଏକ ବକ୍ତବ୍ୟ ରହିଛି, ତାହା ମଧ୍ୟ ବୁଝିବା ଆବଶ୍ୟକ । ଏମାନଙ୍କ ହିଂସା ଓ ଜିଜ୍ଞାସା ସାମୟିକ ଅଥବା ଆଞ୍ଚଳିକ ବିକୃତି ନୁହେଁ । ବୋମାଫିଙ୍ଗା, ଟ୍ରାମଜଳା, ଛୁରୀଭୁଷା ଆଜି ଆନ୍ତର୍ଜାତିକ । କ୍ୱିବେକ୍ (କାନାଡ଼ା)ରେ ଏମାନେ ଏଫ୍. ଏଲ୍. ଏନ୍., ଭାରତରେ ଏମାନେ ନକ୍‌ସାଲାଇଟ୍, ଆମେରିକାରେ ଏମାନଙ୍କ ନାମ 'ୱେ୍ଦରମେନ୍' (Weatherman) ଓ 'ପାନ୍ଥରସ୍' (Panthers) । ୟୁରୋପର ପ୍ରତି ସହର, ପ୍ରତି ରାଜଧାନୀ ଏମାନଙ୍କ ହିଂସ୍ର କୋଳାହଳରେ ମୁଖର । ମାଓ-ସେ-ତୁଙ୍ଗ, ଚି-ଗୁଭେରା, ବା କାଷ୍ଟ୍ରୋ କେହି ଏମାନଙ୍କର ତତ୍ତ୍ୱଗୁରୁ ନୁହଁନ୍ତି । ଏ ସବୁ ନାମ ସେମାନେ କେବଳ ଆଉଡ଼ାଇ ପାରୁଥାନ୍ତି,

ନାମ ବା ସଙ୍କେତ ମୋହରେ । କିନ୍ତୁ ପ୍ରକୃତରେ ଊନବିଂଶ ଶତାବ୍ଦୀର ଦାର୍ଶନିକ ମିଖାଇଲ୍ ବାକୁନିନ୍ ଏମାନଙ୍କ ତତ୍ତ୍ୱଗୁରୁ । ବାକୁନିନ୍ ସେଦିନ କହିଥିଲେ···The urge to destroy is really a creative urge (ଧ୍ୱଂସର ପ୍ରବୃତ୍ତି, ପ୍ରକୃତରେ ସୃଷ୍ଟିଧର୍ମୀ) । ଏମାନେ ଗୃହାନ୍ତି ସବୁ ଧ୍ୱଂସ କରିବା ପାଇଁ । ସେହି ଧ୍ୱଂସ ଭିତରୁ ହୁଏତ ଏକ ନୂତନ ସମାଜ ଜନ୍ମ ଲଭ କରିପାରେ ; ମାତ୍ର ସେ ନୂତନ ସମାଜର ସ୍ୱରୂପ ଓ ଚରିତ୍ର ସମ୍ପର୍କରେ ସେମାନଙ୍କର କୌଣସି ସ୍ପଷ୍ଟ ଧାରଣା ନାହିଁ । ବସ୍ତୁତଃ ସମସ୍ତ ପ୍ରକାର ପ୍ରତିଷ୍ଠିତ ଧାରଣା ପ୍ରତି ସେମାନଙ୍କର ଅବିଶ୍ୱାସ ଓ ସନ୍ଦେହ ।

ଏଇ ହେଲା, ଆଜିର ତରୁଣ ପାଠକ ସମାଜର ଚିତ୍ର । ଏମାନଙ୍କର ମଧ୍ୟ ସାହିତ୍ୟ-ତୃଷା ଅଛି । ମାତ୍ର କେବଳ ଏକ୍‌ସପେରିମେଣ୍ଟବାଦୀ, ଗତିଧର୍ମୀ ସାହିତ୍ୟ ସେ ତୃଷା ନିବାରଣ କରିପାରିବ ନାହିଁ । ସେଥିପାଇଁ ଏକ ନୂତନ ସାହିତ୍ୟ-ଗୋଷ୍ଠୀ ଆବଶ୍ୟକ । ସେମାନେ କାହାନ୍ତି ? ମୁଁ ସେମାନଙ୍କୁ ଅପେକ୍ଷା କରିଛି ।

(କଳିଙ୍ଗ)



# ସମାଜ ଓ ସାମାଜିକ

ଭରତଙ୍କ ନାଟ୍ୟ ଶାସ୍ତ୍ରୋକ୍ତ ପରମ୍ପରା ଅନୁସାରେ ବ୍ରହ୍ମା ହେଉଛନ୍ତି ଆଦି ନାଟ୍ୟକାର । ଦେବଗଣଙ୍କ ଅନୁରୋଧରେ ବ୍ରହ୍ମା ରଚନା କରିଥିଲେ ନାଟ୍ୟବେଦ—ଋକ୍‌ବେଦରୁ ସେ ଆହରଣ କରିଥିଲେ ଶବ୍ଦ ସମ୍ଭାର, ସାମବେଦରୁ ସଙ୍ଗୀତ, ଯର୍ଜୁବେଦରୁ ଅଭିନୟ କଳା ଓ ଅଥର୍ବବେଦରୁ ରସ । ଏ ସବୁର ସମାହାରରେ ସୃଷ୍ଟି ହୋଇଥିଲା ପଞ୍ଚମବେଦ—ନାଟ୍ୟବେଦ । କଳିଙ୍ଗ ସମ୍ରାଟ ଖାରବେଳଙ୍କ ଏକ ପ୍ରଶସ୍ତି ଥିଲା 'ଗନ୍ଧର୍ବ-ବେଦ ବୁଦ୍ଧ ।" ଖାରବେଳ ଅଭିନୟ କଳାରେ କୁଶଳ ଏଥିରୁ ଅନୁମିତ ହୁଏ । ନାଟକ ଓ ଅଭିନୟ ଭାରତୀୟ ସଂସ୍କୃତିରେ ବେଦ ପରି ଥିଲା ସମ୍ମାନିତ, ଏହାର କୌଳିନ୍ୟ ଥିଲା ଶାସ୍ତ୍ରୀୟ । ପୃଥିବୀର ଅନ୍ୟ କୌଣସି ସଂସ୍କୃତିରେ ମଞ୍ଚ ନାଟକର ଏପରି ପରମ୍ପରା ରହିଥିବା ଏହି ଲେଖକଙ୍କୁ ଅନ୍ତତଃ ଜଣା ନାହିଁ ।

ଆଜିର ଉଦ୍ଭଟ-ନାଟକ, ଜୀବନ୍ତ ନାଟକ ଓ ଅଭିନୟ ନାମରେ ମୁକ୍ତ ମଞ୍ଚରେ ଯୌନାଙ୍ଗ ପ୍ରଦର୍ଶନ ମଧ୍ୟରେ ମଞ୍ଚ ଓ ନାଟକର ସେ ପରମ୍ପରା କେଉଁ ପରିମାଣରେ ରକ୍ଷିତ ହୋଇ ପାରୁଛି, ପ୍ରତ୍ୟେକ ନାଟ୍ୟପ୍ରେମୀ ତାହା ଗମ୍ଭୀର ଭାବରେ ଚିନ୍ତା କରିବା ଆବଶ୍ୟକ ।

କଳା ଓ ସାହିତ୍ୟର ଅନ୍ୟ ବିଭାବମାନଙ୍କ ପରି ନାଟକ ମଧ୍ୟ ଆଜି କ୍ରମେ ଜୀବନ ଓ ସମାଜ ଠାରୁ ଦୂରେଇ ଗଲାଣି । କିନ୍ତୁ ଭାରତରେ ନାଟ୍ୟାଭିନୟ ଏକଦା ପରିଚିତ ଥିଲା "ସମାଜ" ନାମରେ । ଓଡ଼ିଶାର ଗ୍ରାମାଞ୍ଚଳରେ ନାଟ୍ୟାଭିନୟ ଅର୍ଥରେ "ସମାଜ" ଶବ୍ଦଟି ଏବେ ସୁଦ୍ଧା ପ୍ରଚଳିତ ଅଛି କି ନାହିଁ ଜଣା ନାହିଁ—ମାତ୍ର ଓଡ଼ିଶାର ପଲ୍ଲୀଜୀବନର 'ସମାଜ' ଶବ୍ଦଟି ଏହି ଅର୍ଥରେ ପ୍ରଚଳିତ ଥିଲା । ଏହାର ପରମ୍ପରା ଅତି ପ୍ରାଚୀନ । ସମ୍ରାଟ ଅଶୋକଙ୍କ ପ୍ରଥମ ଶିଳାଲେଖରେ ଦୁଇଟି ସ୍ଥାନରେ ଏହି 'ସମାଜ' ଶବ୍ଦର ପ୍ରୟୋଗ ଦେଖାଯାଏ ।

(୧) ପ୍ରଭୁ ହ୍ୱିତବ୍ୟମ୍ ନ ଚ
ସମାଜୋ କର୍ତବ୍ୟୋ ବହୁକମ୍

× × ×

(୨) ଅସ୍ତି ପିତୁ ଏ କଛ
ସମାଜ ସାଧୁମତ ଦେବାନାଂ ପ୍ରିୟସ ।

ଐତିହାସିକ ଡ. ଆର୍. ଭଣ୍ଡାରକର୍ (ଇଣ୍ଡିଆନ୍ ଆଣ୍ଟିକ୍ୱାରି, ୧୯୧୩–ପୃ–୨୫୫–୫୮) ଓ ଏନ୍. ଜି. ମଜୁମ୍ଦାର୍ ପ୍ରମୁଖ ଶିଳାଲେଖୋକ୍ତ ଏହି 'ସମାଜ' ଶବ୍ଦର ବିଶଦ ଆଲୋଚନା କରିଅଛନ୍ତି । ଭଣ୍ଡାରକରଙ୍କ ମତରେ, ଯେଉଁ ସ୍ଥାନରେ ନୃତ୍ୟ, ସଙ୍ଗୀତ ଓ ଅଭିନୟ ପ୍ରଭୃତି ଅନୁଷ୍ଠିତ ହୁଏ, ତାହା 'ସମାଜ' ଓ ସମ୍ରାଟ ଅଶୋକ ଏପରି ସ୍ଥାନମାନଙ୍କୁ ଅତି ପବିତ୍ର ଜ୍ଞାନ କରୁଥିବା, ପୂର୍ବୋକ୍ତ ଶିଳାଲେଖରୁ ସୂଚିତ ହୋଇଥାଏ । ବାତ୍ସାୟନଙ୍କ କାମଶାସ୍ତ୍ରରେ ମଧ୍ୟ 'ସମାଜ' ବା ଅଭିନୟସ୍ଥଳୀକୁ ପୁଣ୍ୟପୀଠ ରୂପେ ବିବେଚନା କରାଯାଇଅଛି । ବାଗେଶ୍ୱରୀଙ୍କ ମନ୍ଦିର ପୂଜକମାନେ ଏହିପରି 'ସମାଜ'ର ଆୟୋଜନ କରୁଥିଲେ । ଗ୍ରୀକ୍ ସଂସ୍କୃତିରେ ବାକସ୍ ଓ ଆପୋଲୋଂଡାଇଟ୍ ପ୍ରଭୃତି ଦେବାଦେବୀମାନଙ୍କର ମନ୍ଦିରରେ ମଧ୍ୟ ବିଶ୍ୱ ପ୍ରସିଦ୍ଧ ଟ୍ରାଜେଡ଼ିମାନ ଅଭିନୀତ ହେଉଥିଲା ।

ଏ ସବୁ ଏଠାରେ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଉଛି, ଭାରତୀୟ ସଂସ୍କୃତି ଓ ପରମ୍ପରାରେ ନାଟକ ଓ ଅଭିନୟ ଅତି ସମ୍ମାନିତ ସ୍ଥାନ ଅଧିକାର କରିଥିଲା । ଜନଜୀବନ ସହିତ ଏହାର ଯୋଗସୂତ୍ର କିପରି ନିବିଡ଼ ଥିଲା 'ସମାଜ' ଶବ୍ଦରୁ ହିଁ ତାହା ସୂଚିତ ହୋଇଥାଏ ।

'ନାଟ୍ୟଶାସ୍ତ୍ର'ର ପରମ୍ପରା ଅନୁସାରେ ବ୍ରହ୍ମାଙ୍କ ଦ୍ୱାରା ପ୍ରଯୋଜିତ ଓ ନିର୍ଦ୍ଦେଶିତ ପ୍ରଥମ ନାଟକ "ଅମୃତ ମନ୍ଥନ" ଠାରୁ ସାଂପ୍ରତିକ ବିକାଶ ଓ ବିକୃତି ମଧ୍ୟରେ ନାଟକ ଆଜି ବିଲୟ-ମୁଖୀ ବୋଲି କୁହାଯାଇ ନ ପାରିଲେ ହେଁ, ଜନଜୀବନରେ ନାଟକର ପ୍ରଭାବ ଆଜି ଯେ କ୍ଷୟିଷ୍ଣୁ, ସେଥିରେ ସନ୍ଦେହ ନାହିଁ । ସିନେମା ଓ ଟେଲିଭିଜନ୍‌ର ଆକ୍ରମଣରେ ମଞ୍ଚ ନାଟକର ଏପରି ରୂପାନ୍ତର ହୁଏତ ଅବଶ୍ୟମ୍ଭାବୀ ।

ଏ ପରିସ୍ଥିତିରେ ମଞ୍ଚନାଟକ ନିଜର ସ୍ୱକୀୟତା ରକ୍ଷା କରିବା ପାଇଁ, ଯୌନାଙ୍ଗ ପ୍ରଦର୍ଶନ ପର୍ଯ୍ୟନ୍ତ ସୁଦ୍ଧା ଗଲାଣି । କିନ୍ତୁ ଟେଲିଭିଜନ୍ ଓ ସିନେମାରେ ଏ ଦୁର୍ଲଭ ଦୃଶ୍ୟର ପ୍ରଦର୍ଶନ ପାଇଁ ଯେ ବିଶେଷ ବିଳମ୍ବ ଲାଗିବ, ସେପରି ଆଶଙ୍କା ପୋଷଣ କରି, ନୈରାଶ୍ୟବାଦୀ ହେବାର ମଧ୍ୟ କୌଣସି କାରଣ ନାହିଁ । ତାପରେ ନାଟକ ଆଉ କେଉଁ ବିକୃତିକୁ ଆଶ୍ରୟ କରିବ, ଆଜି ତାହା ଅନୁମାନ କରିବା ହୁଏତ ସମ୍ଭବ ନୁହେଁ । କିନ୍ତୁ ନାଟକ ଓ ମଞ୍ଚର ଏସବୁ ବିକାଶ ପରିବର୍ତ୍ତେ ବିଲୟର ଲକ୍ଷଣ । ନାଟକ ଓ ମଞ୍ଚକୁ ସେଥିରୁ ରକ୍ଷା କରାଯାଇ ପାରିବ କି ?

( କଳିଙ୍ଗ )



# ମାଟିନୀ-ଶୋ

କୌଣସି ସଂସ୍କୃତ ସଭା ସମିତିକୁ ଗଲେ ଯେପରି 'ସଂସ୍କୃତି' ଅପେକ୍ଷାରେ ନିଛାଟିଆ ଡାକବଙ୍ଗଳାରେ ବସି ବସି ସମସ୍ତ ଆଉ ସିଗାରେଟ୍ ପୋଡ଼ିବାକୁ ପଡ଼ିଥାଏ, ସେ ବାର ମଧ୍ୟ ସେହି ଛୋଟିଆ ସହରର ଉପକଣ୍ଠରେ ଗୋଟିଏ ଡାକବଙ୍ଗଳାରେ ବସି ମୁଁ ସେହିପରି ସମସ୍ତ ଆଉ ସିଗାରେଟ୍ ପୋଡ଼ି ପୋଡ଼ି ଚାଲିଥିଲି । ଦୈବାତ୍ ସେହି ପାଂଶୁଳ ଅବସରରେ ସେଠାରେ ଆସି ପହଞ୍ଚିଗଲେ ଜଣେ କବି ବନ୍ଧୁ ସେଠାର ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ । ···ଆଧୁନିକ କବିତାରେ "ଆର୍‌ଚ-ଟାଇପ୍" ସମ୍ପର୍କରେ ଆଲୋଚନା ପଡ଼ିବାରୁ ସେ କହିଲେ, ···ସିନେମାର ମ୍ୟାଟିନି ସୋ ଏକ ବ୍ୟାସ ସରୋବର ।" ଏ ରୂପକଳ୍ପର ତତ୍ତ୍ୱ ସେ ବୁଝାଇ କହିଲେ··· "ବାହାରେ ମଧ୍ୟାହ୍ନର ଅନେକ ଆଲୁଅ, ଜୀବନ ସଂଗ୍ରାମର ଅନେକ ବିକଟ ବାସ୍ତବତା ; କିନ୍ତୁ ସିନେମା ହଲ୍ ଭିତରେ କେତେ ଅନ୍ଧକାର । ରୁପେଲି ପର୍ଦ୍ଦା ଉପରେ କେତେ ସ୍ୱପ୍ନର ମୈଫିଲ୍ ।" ସେହିଦିନୁ ମୁଁ ସିନେମାର ସବୁ ମାଟିନୀ ସୋ ପ୍ରତି ଆକୃଷ୍ଟ । ମୁଁ ମଧ୍ୟ ଏକ ପଳାତକ ଦୁର୍ଯ୍ୟୋଧନ । ମାଟିନୀ ସୋ ଦେଖିବା ପାଇଁ ମୋର ଯେତେ ଉତ୍କଣ୍ଠା ନ ଥାଏ, ସେତେ ଆଗ୍ରହ ଥାଏ, ମାଟିନୀ ସୋ ଦେଖିବା ପାଇଁ ଆସିଥିବା ପଳାତକ "ଦୁର୍ଯ୍ୟୋଧନ" ଓ "ଭାନୁମତୀ"ମାନଙ୍କୁ ଲକ୍ଷ୍ୟ କରିବାରେ ।

କିନ୍ତୁ ଏଇ ସହରକୁ ଏବେ ସତ୍ୟଜିତ୍ ରାୟଙ୍କ "ପ୍ରତିଦ୍ୱନ୍ଦୀ" ଚିତ୍ର ଏକ ସ୍ଥାନୀୟ ସିନେମାରେ ମାଟିନୀ ସୋରେ ପ୍ରଦର୍ଶିତ ହେଉଥିବା ବେଳେ, ମୁଁ ଯାଇଥିଲି ଉଭୟର ଆକର୍ଷଣରେ···ଅର୍ଥାତ୍ ଚିତ୍ର ଓ ତାହାର ଦର୍ଶକ-ମଣ୍ଡଳୀଙ୍କୁ ଦେଖିବା ଅଭିପ୍ରାୟରେ ।

ଜଣେ ଆଇ. ଏ. ଏସ୍ ଅଫିସର (କାର୍ଯ୍ୟ-ଦିନରେ ସୁଦ୍ଧା ଯାହାଙ୍କ ହାତରେ ମାଟିନୀ ସୋ ଦେଖିବା ପାଇଁ ଅବକାଶ ପ୍ରଚୁର ) କହିଲେ···

'ଫ୍ରଷ୍ଟ୍ରେସନ୍‌ର ବେଶ୍ ଜୀବନ୍ତ ଆଲେଖ୍ୟ" । ଜଣେ ଔଷଧ ବ୍ୟବସାୟୀ ଭଦ୍ରଲୋକ କହିଲେ··· "କଲିକତା ଜଳୁଛି । ସେଇ ରଙ୍ଗନାଁ ର ଶବ୍ଦ । ସତ୍ୟଜିତ୍ ରାୟଙ୍କର ଟପ୍ ପିକ୍‌ଚର ।" ଜଣେ ଚଞ୍ଚଳା ସାମାଜିକା କହିଲେ··· "ଆପଣ କିନ୍ତୁ ନିଶ୍ଚୟ ଦେଖିବା ଉଚିତ୍ ।" ମୁଁ ସେ ସମସ୍ତଙ୍କୁ ପଚାରିଲି··· "ଆପଣମାନଙ୍କ ଜୀବନରେ କି ଫ୍ରଷ୍ଟ୍ରେସନ୍ ? ଫ୍ରଷ୍ଟ୍ରେସନ୍, ଆଲିଏନେସନ, ବ୍ୟର୍ଥତା, କକ୍ଷଚ୍ୟୁତି···ଆପଣମାନଙ୍କ ପ୍ରତି ଏ ସବୁର କି ଆକର୍ଷଣ ଥାଇପାରେ ?"

ସେମାନେ ସମସ୍ତେ କହିଲେ···"କିନ୍ତୁ ! କିନ୍ତୁ !" ମାତ୍ର ସେହି 'କିନ୍ତୁ' ଠାରେ ସମସ୍ତେ ଅଟକି ଗଲେ । ଛବିର ତାରିଫ୍ କରୁଥିଲେ ସେମାନେ କେବଳ ନିର୍ଦ୍ଦେଶନାର ପ୍ରତିଭା, ଅଥବା ଅଭିନୟର କୃତିତ୍ୱ ପାଇଁ ନୁହେଁ । ଏହି ଛବିର ଅନ୍ତର୍ନିହିତ ଭାବରାଜି (ଯାହାକି ସେମାନଙ୍କ ଭାଷାରରେ ଫ୍ରଷ୍ଟ୍ରେସନ୍) ପ୍ରତି ସେମାନେ ଥିଲେ ଆକୃଷ୍ଟ । ଅଥଚ ସେମାନେ ଜୀବନରେ କେହି 'ଫ୍ରଷ୍ଟ୍ରେଟେଡ' ନୁହନ୍ତି । ଯେଉଁମାନେ ପ୍ରକୃତରେ 'ଫ୍ରଷ୍ଟ୍ରେଟେଡ' ; ସେମାନେ ହୁଏତ ଏ ଛବି ଦେଖିପାରି ନାହାନ୍ତି, ହୁଏତ ଛବି ଦେଖିବା ପାଇଁ ସେମାନଙ୍କର ସମ୍ବଳ ଅଥବା ସମୟ ନ ଥିଲା ।

'ଫ୍ରଷ୍ଟ୍ରେସନ' ଆଜି କିନ୍ତୁ ଏକ ଚଳନ୍ତି ଫ୍ୟାସନ୍ । 'ଫ୍ରଷ୍ଟ୍ରେସନ' ତେଣୁ ଆଜି ଏକ ସୋ-ବିଜନେସ୍ ।

'ପ୍ରତିଦ୍ୱନ୍ଦୀ' ଛବି ଗୋଟିଏ ଦୃଷ୍ଟିରୁ 'ଫ୍ରଷ୍ଟ୍ରେଟେଡ' ଅନୁଭବ କରୁଥିବା ତରୁଣ ତରୁଣୀ (କଲିକତାର) ସମାଜର ଏକ ପ୍ରଚଣ୍ଡ ସାଟାୟାର୍ । ସାମ୍ପ୍ରତିକ କାଳର ନୈରାଶ୍ୟଗ୍ରସ୍ତ ଯୁବ ସମାଜ ଯାହା ଭାବୁଛନ୍ତି, ତାହା କରୁ ନାହାନ୍ତି । ଯାହା କରୁଛନ୍ତି, ତାହା ଭାବୁ ନାହାନ୍ତି । ଯିଏ ବିପ୍ଳବର ସ୍ୱପ୍ନ ଦେଖୁଛନ୍ତି—ସିଏ ଅବଶେଷରେ ହେଉଛନ୍ତି କୌଣସି ଔଷଧ କୋମ୍ପାନୀର ଟ୍ରାଭଲିଂ ସେଲ୍‌ସମ୍ୟାନ୍ । ଯିଏ ଚ ଗୁଏଭେରା ପଢ଼ି, ସେଇପରି ଦାଢ଼ୀ ରଖି, ବିପ୍ଳବର ଉଦ୍‌ବୋଧନରେ ଶତମୁଖ, ସିଏ ଦେଖାଯାଏ ନାନା ଉପାୟ ଅପାୟରେ ହୁଇସ୍କି ଆଉ ସହଜଲଭ୍ୟା ନାରୀମାନଙ୍କୁ ଭୋଗ ବ୍ୟସ୍ତ । ଏଇ ହେଲା କଲିକତାର ଯୁବ ସମାଜର ଚିତ୍ର, ଯଦ୍ୟପି ଏହା

ଆଂଶିକ ମାତ୍ର ଓ ପୂର୍ଣ୍ଣାଙ୍ଗ ନୁହେଁ । ଆଜର 'ଫ୍ରଷ୍ଟ୍ରେସନ୍' ମଧ୍ୟ ଏକ ମାଟିମା ସେ। । ଅଧା ଅନ୍ଧାର ଅଧା ଆଲୁଅ ମଧ୍ୟରେ ଏଥିରେ ବାସ୍ତବତା କେତେ ଆଉ କେତେ ବା ଅଭିନୟ, ତାହା ନିରୂପଣ କରିବା କଠିନ ।

ଆଜର 'ଫ୍ରଷ୍ଟ୍ରେସନ୍' ମଧ୍ୟ ପଳାୟନର ଏକ ପନ୍ଥା—ଏକ ବ୍ୟାସ ସରୋବର ।

(କଳିଙ୍ଗ)



# ସାହିତ୍ୟ, ସଂସ୍କୃତି ଓ ରାଜନୀତି

ପୂର୍ବବଙ୍ଗଳା ନିର୍ବାଚନରେ ଆଓ୍ୱାମୀଲିଗ୍‌ର ଅଭୂତପୂର୍ବ ବିଜୟର ନେପଥ୍ୟରେ ଗୋଟିଏ କଥା ସୁସ୍ପଷ୍ଟ ହୋଇ ଯାଇଛି—ରାଜନୈତିକ କ୍ଷେତ୍ରରେ ଭାଷା, ସାହିତ୍ୟ ଓ ସଂସ୍କୃତିର ଅପ୍ରତିରୋଧ ପ୍ରଭାବ । ରାଜନୀତି, ସାହିତ୍ୟ ଓ ସଂସ୍କୃତିକୁ ନିୟନ୍ତ୍ରିତ କରୁଥିବା ଯୋଗ, ଅନେକ ଆର୍ତ୍ତନାଦ ଶୁଣାଯାଉଥିବା ବେଳେ, ସାହିତ୍ୟ ଓ ସଂସ୍କୃତି କପରି ରାଜନୀତିକୁ ପ୍ରଭାବିତ କରିପାରେ, ପୂର୍ବବଙ୍ଗଳା ନିର୍ବାଚନର ଫଳାଫଳ ତାହାର ଏକ ସଫଳ ଦୃଷ୍ଟାନ୍ତ । ରାଜନୈତିକ ଓ ସାଂପ୍ରଦାୟିକ ବିଭେଦ, ବିଭାଗ ସତ୍ତ୍ୱେ ପୂର୍ବବଙ୍ଗଳାର ଅଧିବାସୀମାନେ ବଙ୍ଗଳାଭାଷା, ସାହିତ୍ୟ ଓ ସଂସ୍କୃତି ଯୋଗ ଯଥେଷ୍ଟ ଗର୍ବିତ ଏବଂ ସେ କ୍ଷେତ୍ରରେ ପଞ୍ଜାବୀ ପ୍ରାଧାନ୍ୟ ଓ ଉର୍ଦ୍ଦୁ ଭାଷାର ଆଧିପତ୍ୟ ବିରୁଦ୍ଧରେ ଯେଉଁ ଗଣ-ପ୍ରତିରୋଧ ଗଢ଼ି ଉଠିଥିଲା ; ଆଓ୍ୱାମୀ ଲିଗ୍‌ର ବିଜୟ ହେଲା ତାର ଐତିହାସିକ ପରିଣତି ।

ମାନ୍ଦ୍ରାଜରେ ଦ୍ରାବିଡ଼-ମୁନେତ୍ରା କାଜଗମ୍‌ର ଅସପତ୍ନ ପ୍ରତିଷ୍ଠା ମୂଳରେ ରହିଛି ମଧ୍ୟ ତାମିଲ ଭାଷା ଓ ସଂସ୍କୃତିର ଉଦ୍‌ବୋଧନ । ସେଥିପାଇଁ କ୍ଷମତାସୀନ ଦ୍ରାବିଡ଼ ମୁନେତ୍ରା କାଜଗାମ୍ ସରକାର ତାମିଲ ଭାଷାକୁ ଆନ୍ତର୍ଜାତିକ ଭାଷାର ସ୍ୱୀକୃତି ଦେବାପାଇଁ, ପ୍ୟାରିସ୍‌ରେ ସୁଦ୍ଧା ତାମିଲଭାଷା ଓ ସାହିତ୍ୟ ସଂପର୍କରେ ଏକ ଆନ୍ତର୍ଜାତିକ ସମ୍ମିଳନୀର ଆୟୋଜନ କରିଥିଲେ ।

ଏବେ ପଶ୍ଚିମବଙ୍ଗଳାରେ "ନିଖିଳ ଭାରତ ବଙ୍ଗଭାଷା ପ୍ରଚାର ସମିତି"ର ଏକ ଅଧିବେଶନ ସମାପ୍ତ ହୋଇ ଯାଇଛି । ସମିତିର ନାମକରଣରେ ଅନୁଷ୍ଠାନର ଆଭିମୁଖ୍ୟ ସୂଚିତ । ପ୍ରାଚୀନ ତଥା ଆଧୁନିକ ବଙ୍ଗଳା ସାହିତ୍ୟକୁ ଅନୁବାଦ ମାଧ୍ୟମରେ, ଭାରତ ତଥା ଭାରତ ବାହାରେ ପ୍ରସାରିତ ଓ ପ୍ରଚାରିତ କରିବା ଏହି ଅନୁଷ୍ଠାନର ମଧ୍ୟ ଅନ୍ୟତମ ଉଦ୍ଦେଶ୍ୟ । ସେଥି ସଙ୍ଗେ ସଙ୍ଗେ ବଙ୍ଗଳା ଭାଷାରେ ଅନଭିଜ୍ଞ ଓ ସେଥି ସହିତ ଅପରିଚିତ

ବୈଦେଶିକମାନଙ୍କୁ ବଙ୍ଗଳାଭାଷା ଓ ସାହିତ୍ୟ ସହିତ ପରିଚିତ କରାଇବା ପାଇଁ, ଏହି ଅନୁଷ୍ଠାନ ଧାରାବାହିକ ଭାବରେ କାର୍ଯ୍ୟ କରିଆସୁଅଛି । ସେଦିନ ଏହି ଅନୁଷ୍ଠାନର ବାର୍ଷିକ ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହୋଇଗଲା । ଏଥିରେ ପୂର୍ବଜର୍ମାନୀର କଲିକତାସ୍ଥିତ କନ୍‌ସଲ୍ ଶ୍ରୀ ପାପ୍ଟାର୍ସେଲ୍ ଓ ଜାପାନୀ ଛାତ୍ର ଶ୍ରୀ ହିରାସିଓ ସତୋଙ୍କ ସମେତ ବହୁ ଅଣବଙ୍ଗାଳୀ ଛାତ୍ରଛାତ୍ରୀ ବଙ୍ଗଳା ଭାଷାରେ ପାରଦର୍ଶିତା ପାଇଁ ଅଭିଜ୍ଞାପତ୍ର ଓ ପଦକ ପ୍ରଭୃତି ଲାଭ କଲେ । ସର୍ବସମେତ ଦୁଇଶହ ଅଣବଙ୍ଗାଳୀ ଭାଷା ପରୀକ୍ଷାରେ କୃତିତ୍ୱ ଅର୍ଜନ କରିଥିବା ଏହି ଉତ୍ସବର ବିବରଣୀରୁ ଜଣାପଡ଼ିଲା । ବଙ୍ଗଳା ଭାଷା ଓ ସାହିତ୍ୟର ଏପରି ପ୍ରଚାର ଓ ସଂପ୍ରସାରଣ, ବଙ୍ଗ ଭାଷାଭାଷୀମାନଙ୍କୁ ଏକ ନୂତନ ସ୍ୱାଭିମାନ ଓ ଆତ୍ମପ୍ରତ୍ୟୟରେ ଯେପରି ଉଦ୍ଦୀପିତ କରିଛି—ତାହା ଏଠାରେ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ ।

ଏହି ପୃଷ୍ଠଭୂମିରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବ୍ୟାପକତର ପ୍ରସାର ସଂପର୍କରେ, ଓଡ଼ିଶା ସରକାରଙ୍କଠାରୁ ଆରମ୍ଭ କରି, ଶିକ୍ଷିତ ସମାଜ ପର୍ଯ୍ୟନ୍ତ ସର୍ବତ୍ର ଏକ ଉଦାସୀନତା ପରିଲକ୍ଷିତ ହୋଇଥାଏ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ନାମରେ ହଟ୍ଟଗୋଳ ଶୁଣାଯାଉଛି ଅନେକ । କିନ୍ତୁ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତା, ଓଡ଼ିଶା ବାହାରେ ସଂପ୍ରସାରିତ ହେଉନାହିଁ କ'ଣ—ଓଡ଼ିଶାର ଏକ ଅଞ୍ଚଳରୁ ଅନ୍ୟ ଅଞ୍ଚଳ ପର୍ଯ୍ୟନ୍ତ ସୁଦ୍ଧା ଗତି କରିପାରୁନାହିଁ । ସେଥିପାଇଁ ମଝିରେ ଅବୁଝା ମଣାର ଯେଉଁ ପ୍ରାଚୀର ଗଢ଼ିଉଠୁଛି, ତାହା ଓଡ଼ିଶାର ଅଖଣ୍ଡ ସତ୍ତାକୁ ସୁଦ୍ଧା ବେଳେ ବେଳେ ବିପନ୍ନ କରିଦେଉଛି । ବଙ୍ଗଳା ଭାଷା ଓ ସାହିତ୍ୟର ଆବେଦନ ଧର୍ମ ଓ ରାଜନୀତିର ସୀମା ଲଙ୍ଘନକରି "ଦୁଇ" ବଙ୍ଗଳାକୁ "ଏକ" କରି ପାରୁଥିବା ବେଳେ, ପ୍ରବର୍ଦ୍ଧମାନ ଓଡ଼ିଆଭାଷା ଓ ସାହିତ୍ୟ ପକ୍ଷରେ ତାହା ସମ୍ଭବ ହେଉନାହିଁ କାହିଁକି ? ଶତ ତୁଚ୍ଛତା ମଧ୍ୟରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ନାମରେ ସବୁ କୋଳାହଳ ନୀରବ ହୋଇଯାଉଛି କିପରି ? ଓଡ଼ିଶାର ତରୁଣ ଲେଖକ ଓ ସଂସ୍କୃତି ପ୍ରେମୀମାନଙ୍କୁ ଏହାର ଉତ୍ତର ଚିନ୍ତା କରିବା ପାଇଁ ମୁଁ ଅନୁରୋଧ କରୁଛି ।

(କଳିଙ୍ଗ)



# ଆଜିର ଦୁର୍ବୋଧତା

କଳଙ୍ଗର · "ସାହିତ୍ୟ ସୃଷ୍ଟି" ସ୍ୱଳ୍ପ ପରିସର ମଧ୍ୟରେ ଆରମ୍ଭ କଲା-ବେଳେ ଏକମାତ୍ର ଆକାଂକ୍ଷା ବା ଅଭିଳାଷ ଥିଲା—ସାମ୍ପ୍ରତିକ ଯୁଗମାନସର ଚିତ୍ର ପରିବେଷଣ କରିବା । ଏ ଉଦ୍ଦେଶ୍ୟ କେଉଁ ପରିମାଣରେ ସଫଳ ହୋଇଛି, ବା ନ ହୋଇଛି, ସେ ସମ୍ବାଦ ମୋତେ ଜଣାନାହିଁ । ମାତ୍ର ସାଂପ୍ରତିକ କାଳର ଚେତନାବାହୀ ସୃଷ୍ଟିଧର୍ମୀ ରଚନା, ଏହି ସୃଷ୍ଟିରେ ଅବାରିତ ଭାବରେ ପ୍ରକାଶ ପାଇ ଆସିଛି ; ଏ ସାହିତ୍ୟର ମୂଲ୍ୟାୟନ କରିବା ମୋର ଉଦ୍ଦେଶ୍ୟ ନୁହେଁ । କାରଣ କାଳ ହିଁ ସବୁ କଳାର ଶେଷ ସମୀକ୍ଷକ । ଇତି ମଧ୍ୟରେ ମୁଁ ଚାହେଁ, ଯୁଗର ସୃଷ୍ଟି ତାର ଚେତନା ଓ ଯନ୍ତ୍ରଣା, ସଂଗ୍ରାମ ଓ ସଙ୍କଟ, ମୋହ ଓ ମୋହଭଙ୍ଗର ସ୍ୱାକ୍ଷର ବହନ କରି ଆତ୍ମପ୍ରକାଶ କରୁ । "ସାହିତ୍ୟ ସୃଷ୍ଟି"ରେ ତାହାହିଁ ଏ ପର୍ଯ୍ୟନ୍ତ ହୋଇଆସିଛି ।

ମାତ୍ର ସେଥିପାଇଁ ସେଦିନ ଏକ ସାହିତ୍ୟ ସମାବେଶରେ ମୋତେ ଯୌଥ-ଆକ୍ରମଣର ସମ୍ମୁଖୀନ ହେବାପାଇଁ ପଡ଼ିଲା । ସମାଲୋଚକମାନେ (ଅତି ଯଥାର୍ଥରେ) ଅବଶୋଷ କରିଛନ୍ତି—ସାହିତ୍ୟ କ୍ଷେତ୍ରରେ ନାନା-ପ୍ରକାର ଦୁର୍ବୋଧତା ଓ ଉଦ୍‌ଭଟତା, ଏହି ସାହିତ୍ୟ ସୃଷ୍ଟି ଦ୍ୱାରା ହିଁ ପ୍ରୋତ୍ସାହିତ ହେଉଛି । କିନ୍ତୁ 'a people get the govcrnment they deserve"—ରାଜନୀତି କ୍ଷେତ୍ରରେ ଯେତିକି ସତ୍ୟ, ସାହିତ୍ୟ କ୍ଷେତ୍ରରେ "a people get the literature they deserve" ତତୋଧିକ ସତ୍ୟ । (ବୋଧହୁଏ ଏହି ଶେଷୋକ୍ତ ସୂତ୍ରଟି କବି ଟି. ଏସ୍. ଏଲିୟଟ୍‌ଙ୍କର ।) ଆଜିର ଯୁଗ ଯେପରି ଉଦ୍‌ଭଟ, ଯୁଗ-ମାନସ ମଧ୍ୟ ସେହିପରି ଦୁର୍ବୋଧ ଓ ଅସ୍ପଷ୍ଟ । ଆଜିର ସାହିତ୍ୟକୁ ଯଦି ବୁଝି ହେଉ ନାହିଁ ରାଜନୀତିକୁ କ'ଣ ବୁଝିହେଉଛି ? ରାଜନୀତିର ପଙ୍କଚନ୍ଦନରେ

ବିଗତ ଚଉଠ ଶତାବ୍ଦୀ କାଳ, ଆକଣ୍ଠ ନିମଜ୍ଜିତ ରହି ସୁଦ୍ଧା, ମୋର ମନେ ହେଉଛି, ଆଜିର ରାଜନୀତିଠାରୁ ବଳି ଅସ୍ପଷ୍ଟ ଓ ଉଦ୍‌ଭଟ ଆଉ କିଛି ନାହିଁ । ଆଜିର ରାଜନୀତିକୁ ଯଦି ବୁଝି ହେଉନାହିଁ, ସମାଜଜୀବନକୁ କ'ଣ ବୁଝି ହେଉଛି ? ସାମ୍ପ୍ରତିକ ଜୀବନ ଆଜି ଏପରି ଉଦ୍‌ଭଟ (absurd) ଯେ ତାହାର ପ୍ରକାଶ ଓ ପ୍ରକୃତି ଗୋଲକଧନ୍ଦାଠାରୁ ସୁଦ୍ଧା ବଳି ଜଟିଳ । ଆଜିର ମଣିଷ ହୁଏତ ତାହାର ପରିବେଶ ଓ ପରିବେଷ୍ଟନୀକୁ ବୁଝିପାରୁନାହିଁ—କିନ୍ତୁ ସେ ନିଜକୁ କ'ଣ ଠିକ୍ ବୁଝି ପାରୁଛି ? ଉଦ୍‌ଭଟତା ଓ ଅସ୍ପଷ୍ଟତା, ଆଜିର ଯୁଗମାନସର ପ୍ରକୃତି ଥିବାବେଳେ, ସମସାମୟିକ ସାହିତ୍ୟରେ ସେ ପ୍ରବୃତ୍ତି ଓ ପ୍ରବଣତା ସଂକ୍ରମିତ ହେବାହିଁ ତ ସ୍ୱାଭାବିକ ।

ସାମ୍ପ୍ରତିକ ସାହିତ୍ୟରେ ଅସ୍ପଷ୍ଟତା ଉଦ୍‌ଭଟତା କେଉଁ ସୀମା ସ୍ପର୍ଶ କରିଛି, ଆମେରିକାନ୍ କଂକ୍ରିଟ୍ କବିତାରୁ ତାହାର ଉଦାହରଣ ମିଳିବ । କବି ଆରାମ ସାରୋୟାନ୍‌ଙ୍କ ପ୍ରସିଦ୍ଧ (Blood) କବିତାଟି ନିମ୍ନରେ ଉଦ୍ଧୃତ ହେଉଅଛି···

W W W W
W W W W

W a w w
W a k w
W a k e

W a l w
Walk"

କବି ଉପେନ୍ଦ୍ରଭଞ୍ଜଙ୍କ ଚିତ୍ରକାବ୍ୟର ପଦ ବା ସଂସ୍କୃତ-କବିଙ୍କ "ରଚିଂଛି ଚଚରିରେ ଚିଚଞ୍ଚରୁରୁରୁ ରୁରୁଚିଃ"—ମଧ୍ୟ ପ୍ରାଣରେ ଏଇଆ ନ ଥିଲେ ବି ପ୍ରକୃତିରେ ଥିଲା ଏଇଆ ।

କାଳିଙ୍ଗ "ସାହିତ୍ୟ ପୃଷ୍ଠା"ର ସମ୍ପାଦକୀୟରୁ ଅଭିରୁଚି ଯାହା ହେଇଥାଉ ନା କାହିଁକି, ଅସ୍ପଷ୍ଟତା ଓ ଦୁର୍ବୋଧତା, ସାଂପ୍ରତିକ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ଆଭିମୁଖ୍ୟ । ଏ ରୁଚି ଯେ ନିକଟ ଭବିଷ୍ୟତରେ

ପରିବର୍ତ୍ତିତ ହେବାକୁ ଯାଉଛି, ସେଥିରେ ମଧ୍ୟ ସନ୍ଦେହ ନାହିଁ । ଏଥି ମଧ୍ୟରୁ କେତେ ଆନ୍ତରିକତାସମ୍ପନ୍ନ ସାହିତ୍ୟ ଆଉ କେତେ ନିଛକ ଅଭିନୟ ବା 'ପସ୍‌ଚରିଙ୍ଗ୍' (posturing) ତାହା ମଧ୍ୟ କୁହାଯାଇ ନ ନ ପାରେ । ତଥାପି ସାଂପ୍ରତିକ ସାହିତ୍ୟର ଏକ ପ୍ରବୃତ୍ତି ଓ ପ୍ରବଣତା ରୂପେ ଏହା ଆଜି ସୁପ୍ରତିଷ୍ଠିତ ; ତାହାକୁ ଆମେ ଗ୍ରହଣ କରିପାରୁ ବା ନ ପାରୁ···ସେଥିରେ କିଛି ଯାଏ ଆସେ ନାହିଁ ।

( କଳିଙ୍ଗ )

